# ହୀରାଖଣ୍ଡର ଗାଥା :

ରଚୟିତା
ରାଧାମୋହନ ଗଡ଼ନାୟକ

ପ୍ରକାଶକ
କୃଷ୍ଣଚନ୍ଦ୍ର ବେହେରା
ବୁକ୍ସ ଏଣ୍ଡ ବୁକ୍ସ
ବିନୋଦ ବିହାରୀ, କଟକ

ପ୍ରଥମ ପ୍ରକାଶ—୧୯୮୬

ପ୍ରଚ୍ଛଦ ଶିଳ୍ପୀ
ଅସିତ୍ ମୁଖାର୍ଜୀ

ମୁଦ୍ରଣ
ଜୁଲି ପ୍ରିଣ୍ଟର୍ସ
ଝାଞ୍ଜିରି ମଙ୍ଗଳା, କଟକ-୯

ମୂଲ୍ୟ—ଆଠଟଙ୍କା ମାତ୍ର
ଶୋଭନ—ଦଶଟଙ୍କା ମାତ୍ର

**Hirakhandar Gatha**

*Author*
**Radhamohan Gadanayak**

*Published by*
**K. C. Behera**
Books & Books
Binod Behari, Cuttack.

First Published 1986

*Cover design*
**Asit Mukharjee**

*Printed by*
**Julli Printers**
Jhanjiri Mangala,
Cuttack-9

Price—Rupees Eight only
Deluxe—Rupees Ten only

## କହି ରଖୁଛି—

ପଶ୍ଚିମ ଓଡ଼ିଶାର କେତେକ ଐତିହାସିକ କଥା ଓ କିମ୍ବଦନ୍ତୀ ନେଇ "ହୀରାଖଣ୍ଡର ଗାଥା" ରୂପାୟିତ ହୋଇଛି । ସେଥିରେ "ସୁରେନ୍ଦ୍ର ସାଏ" ସମ୍ପର୍କିତ କବିତାଟିଏ ସଂଯୋଜନା କରିବାର ଇଚ୍ଛା ଥିଲା, ମାତ୍ର ଲେଖୁ ଲେଖୁ ତାହା ଅତ୍ୟନ୍ତ ଦୀର୍ଘ ହୋଇ ଯାଇଛି, ତେଣୁ ସ୍ୱତନ୍ତ୍ର ପୁସ୍ତକ ଭାବରେ ତାହା ପ୍ରକାଶ ପାଉଛି ।

ରାଧାମୋହନ ଗଡ଼ନାୟକ
ଭୁବନେଶ୍ୱର

୧୯୮୬

# ସୂଚୀ…………

# ଜଗଓର ସିଂହ ଦେଓ

୧

''ସମ୍ବଲପୁର        ରାଜଦରବାରୁ
  ନିର୍ଦ୍ଦେଶ ଆଜ ଆସିଛି ବାପ
ସମର କ୍ଷେତ୍ରେ        ଛୁଟି ଯାଅ ଏବେ
  ଦେଖାଅ ତୁମର ଶୌର୍ଯ୍ୟଛାପ ।

ମହାରାଜ-କଥା        ରେଢି ଦେଇଅଛୁ
  ରେଢ଼ାଖୋଲ-ରାଜା ଗର୍ବେ ଆଜ,
ସମ୍ବଲପୁର—        ରାଜଦଣ୍ଡକୁ
  ମାଢବାକୁ ଯାଉ ନୁହଇ ରାଜ ।

ମୋ ଉପରେ ପୁଣି        ଆଦେଶ ହୋଇଛି
  ଖୋଲ ରାଇଜର ଦର୍ପ ହର,
ରାଜ-ବିଦ୍ରୋହ        ଅପରାଧ ପାଇଁ
  ଗର୍ବ ତାହାର ଖର୍ବ କର ।

ଜରାଜର୍ଜର        କଳେବର ମୋର,
  ଦୁର୍ବଳ ଆଜ ମୋହର ବାହୁ,
ବୃଦ୍ଧ ବୟସେ        ଯୁଦ୍ଧ କରିବ
  କହ ଯୁବରାଜ କିପରି ଆଉ ?

ଜଗଓର ତୁମେ,          ଏକାଇ ଭରସା,
  ସନମାନ ମୋର ରଖିବ ତୁମେ,
ନୋହିଲେ ଆମର          ଠାବ ନାହିଁ ଏବେ,
  ଏଇ ସୁବର୍ଣ୍ଣ ରାଇଜ ଭୂମେ ।

କଅଣ ଝୁରୁଚ          ଜଗଓର ଏବେ
  ଡାକଲଣି ଏଇ ସମର ଭେରୀ
ସମର-ଭକ୍ତ          ତରୁଣ-ରକ୍ତ,
  ଆଉ କାହିଁପାଇଁ କରୁଚ ଡେରି ?"

ସୋନପୁର-ରାଜ          ଦିବ୍ୟ ସିଂହ
  ବିଷମ ବିପଦ ସମସ୍ତ ଜାଣି
ରାଜ କୁମାରରେ          ଶୁଣାଇଲେ ଖରେ
  ଉଦ୍‌ବୋଧନର ଉଷ୍ମ ବାଣୀ—

"ସଂଗ୍ରାମ ପଥେ          ପିତୃଦେବ ହେ
  ଯାଉଚ ବିପୁଳ ସଇନ ଗୁଳି,
ଖୋଲ ରାଇଜର          ଗର୍ବ ଗୁମାନ
  ତବ ଆଶିଷରେ ପାରିବି ଟାଳି ।

ମନେ ହେଉଅଛି,          କୁମାର ମୁଁ ତବ
  ଜୈତ୍ର ପତାକା ତୋଳି ଏ କରେ,
ଶୁଭ ଜୟଶିରୀ          ସଁପି ଦେବି ଦେବ,
  ପବିତ୍ର ତବ ଚରଣ ତଳେ ।"

"ଯାଅ ଯାଅ ବାପ, ସୁବର୍ଣ୍ଣ ମେରୁ
ସମରେ ତୁମକୁ ହୋଇବେ ସାହା,
ଜୟଶୀଳ ହେଉ ତୁମ ଅଭିଯାନ,
ଅନୁକୂଳ ହେଉ ତୁମର ରାହା ।"

୨

"ଜାଗି ଉଠ ଆଜ ସୁବର୍ଣ୍ଣପୁର
ଦେଶର ଆସିଛି ଦୁର୍ବିପାକ,
ଜଗତର ମୁଣ୍ଡି ସେନାନୀ ତୁମର,
ଜଣାଉଛି ଆଜ ଯୁଦ୍ଧ-ଡାକ

ସମ୍ବଲପୁର— ମହାରାଜା ଯାମ
ସାମନ୍ତ ରାଜା ସଭିଏ ଆମେ,
ମାନ ଧନ ବଳେ ଆମେରେ ସକଳେ
ଗର୍ବିତ ଆମେ ଜଣକ ନାମେ ।

ତାଙ୍କର ଆଜ ଆଦେଶ ଆସିଛି
ରେଢ଼ାଖୋଲ୍-ପରେ ଲମ୍ଫ ଦଅ,
ରେଢ଼ାଖୋଲ୍-ପରେ ମାଢ଼ ଚାଲ୍ ଯାଅ,
ତା' ଆଜ ଆମର ବାଞ୍ଛିତସ୍ଥ ।"

ସୁବର୍ଣ୍ଣପୁର ରାଜ୍ୟର ସେନା
ଜାଗିଲେ, ଜାଗିଲେ ଜୀବନ ଢାଲ,
ରେଢ଼ାଖୋଲ ପରେ ଚଢ଼ିଗଲେ
ଧନୁବାଣ, ଅସି, ଫାର୍ସା ଶୂଳ ।

ଜଗ୍ଔର ଦେଔ, କେନାମଣି ରାଜା
ମୁହାଁ ମୁହିଁ ହୋଇ ବସିଲେ ରଣ
ଜଣେକ ତରୁଣ, ଆରେକ ବୃଦ୍ଧ
ଦେଖାଇଲେ ଯେଷ୍ଟା ଯୋଦ୍ଧୃପଣ ।

ଚକ୍ଷୁ ପଲକେ କଅଣ ହେଲା କେ
ଦାରୁଣ କଅଣ ଆଘାତ ବାଜ
ଜଗ୍ଔର-କରେ ଯେଉଁ ଅସି ଥିଲା
ରହିଥିଲା ତାହା, ଗଲାକେ ରାଜ ।

ଘୋଟକ ଛୁଟାଇ ଜଗ୍ଔର ତହୁଁ
ପଳାଇଲେ ନିଜ ପରାଣ ଘେନି,
ବହୁତ ପଛରେ ରହିଗଲେ ତହିଁ
ଗୋଡ଼ାଇଥିଲେ ଯେ ସବାର ବେନି ।

ସୌଧ ଶିଖରେ ବସିଥିଲେ ରାଣୀ
ଦୃଷ୍ଟି ଖେଳାଇ ପାରିଲେ ହେରି
ଜଗ୍ଔର ତା'ର ଘୋଟକ ଛୁଟାଇ
ନଅରକୁ ଏବେ ଆସୁଛି ଫେରି ।

ତର ତର ହୋଇ ଓହ୍ଲାଇ ଗଲେ
ମଲିନ ଭୂମାରେ ଦେଖିଲେ ତଳେ
"ସମ୍ବାଦ କସ ?" ପଚାରିଲେ ଦେଷ
ସେନେହ—ମମତା— ମେଦୁର ସ୍ୱରେ ।

"ଲଢ଼ି ଥିଲି ମୁହିଁ", ବୋଇଲେ କୁମାର
"ପାଞ୍ଚ ଖଣ୍ଡା ତ ପଡ଼ିଲା ଭାଜି,
ଜୀବନ ଘେନି ମୁଁ ପଳାଇ ଆସିଚ,
ଚରଣେ ଆଶ୍ରା ଦିଅ ମା ଆଜି ।"

ଶୁଣିଲେ ଜନନୀ, ପଦଏ ବଚନ
ନ କହି ନଅରେ ସ୍ଥଳିଲେ ହେଲେ,
ସାଥେ ସାଥେ ଶାଢ଼ୀ ଖଣ୍ଡିଏ ଆଣି
କୁମାର ଅଡ଼କୁ ଫିଙ୍ଗି ଦେଲେ ।



"ଭାବିଥିଲି ବୀର ସନ୍ତାନ ତୁମେ,
ଲେଉଟି ଆ'ନ୍ତ ବିଜୟ ଧରି,
ବନ୍ଦାଇ ନେଇ ଥା'ନ୍ତି ତୁମକୁ
ହରଷ ଆକୁଳେ ଆଦର କରି ।

ପୁରୁଷ ତୁମେ ତ ନୁହ ଯୁବରାଜ
ନାରୀ ତୁମେ, ଦେଲ ପ୍ରମାଣ ତାର,
ଦେଖୁ ଅଛୁ ଏବେ ଶାଢ଼ୀ ଖଣ୍ଡିକ
ତୁମର ଯୋଗ୍ୟ ପୁରସ୍କାର ।"

"ବିଦ୍ରୂପ ତୁମେ କରୁଅଛ ମତେ
କଅଣ କହୁଚ ଅନଳ ଝମ୍ପେ,
ତୁମରି ଚରଣେ ଫେରି ଆସି ଅଛୁ,
ପୁଣି ଫେରିଚ ଜନନୀ ପାଶେ ।"

“କାହିଁକ ଆସିଚ, ପଳାଇ ଆସିଚ,
ଫେରଯାଅ ସେଇ ସମର ପଥେ,
ବିଜୟ ଲକ୍ଷ୍ମୀ ପାଇ ନ ପାରିଲେ,
ମରଣ ବର ସେ ଅମର ପଥେ ।”

ଜନନୀ-ବଚନେ ରୁଣ୍ଡ ନ ଖୋଲି
ଫେରିଲେ କୁମାର ସମର ସ୍ଥରେ,
ଆତୁର ବିପୁଳ ଶୌର୍ଯ୍ୟ ଆତୁର
ଆତୁର ବିପୁଳ ସଇନ କୁଲେ ।

୩

ଦୁଇ ଦଳ ପୁଣି ଭେଟା ଭେଟି ହେଲେ
ଧମନୀରେ ଲହୁ ଉଠିଲା ତାତି
ଦୁଇ ଦଳ ପୁଣି ରଣ-ହୁଙ୍କାରେ
ଉଠିଲେ ମାତି ରେ ଉଠିଲେ ମାତି ।

“ଆରେ ପଳାତକ, କେଉଁ ମୁଖେ ପୁଣି
ଫେର ଅଛୁ କେତେ କାଳିମା ଧରି ।”
ଜେନାମଣି ରାଜା ପରିହାସ କଲେ
ନସ୍ୱଓର ଦଗେ ଲକ୍ଷ୍ୟ କରି ।

କଥା କହୁବାର ସାଧ୍ୟ ତୁମର
ଜେନାମଣି ତୁମ ସାଧ୍ୟ ବଢ଼
ପଳାତକ ମୁହଁ ଫେର ଆସି ଅଛୁ
କଥା ଛାଡ଼ି ଦେଇ ହୃଦୟ ଲଢ଼ ।”

ଦୁଇ ଦଳ ପୁଣି ମତ୍ତ ହୋଇଲେ
  ହଣାହଣି ପୁଣି ଚଳିଲ ଜୋର,
ଦିଗ ଦିଗନ୍ତ ଅନ୍ଧାର କରି
  ଚଳିଲ ଚଞ୍ଚଳ ଯୁଦ୍ଧ ଘୋର ।

ରେଢ଼ାଖୋଲ-ଦଳ ହଟିଲେ ହଟିଲେ
  ପ୍ରବଳ ହୋଇଲା ଯୁଦ୍ଧ ଘଟା
କେନାମଣି ରାଜା ବନ୍ଦୀ ହୋଇଲେ
  ସଇନ ହଟିଲେ ସଭେ କ ଭଣ୍ଟା ।

ସୁବର୍ଣ୍ଣ ପୁର- ସଇନ ହଠାତ୍
  ଉଚ୍ଚେ ତୋଳିଲେ ବିଜୟ ରବ
କମ୍ପି ଉଠିଲା ରେଢ଼ାଖୋଲ ବଣ
  କମ୍ପି ଉଠିଲା ବିପୁଳ ନଭ ।

୪

ସମ୍ବଲପୁର- ରାଜ ଦରବାରେ
  ବସେ ମହାରାଜା ଅଜିତ ସିଂହ,
ହର୍ଷର ରୋଳ ମୁଖରି ଉଠୁଛି,
  ମହାନଦୀ-କୂଳ, ଦିଗ ବିଦିଗ ।

ପ୍ରହରୀ ବର୍ଗ ବନ୍ଦୀ ରାଜାରେ
  ଠିଆ କରାଇଲେ ସମ୍ମୁଖେ ନେଇ
ଦିବ୍ୟ ସିଂହ ହର୍ଷେ ବୋଇଲେ
  "ରାଜ ବିଦ୍ରୋହୀ ହାଜର ଏଇ ।"

"କଅଣ କହୁଚ        କେନାମଣି ରାଜା
'କଅଣ କହୁଚ ବର୍ତ୍ତମାନ ?"
ଅଜିତ ସିଂହ        ପଚାରିଲେ ଡେବେ—
"ହୋଇଥିଲ ବଡ଼ ଦର୍ପବାନ,

ସମାନ ସ୍କନ୍ଧ        ନୁହ ବୋଲି ତୁମେ
ସୁବର୍ଣ୍ଣ ପୁରେ ପଠାଇ ଦଳ,
ବନ୍ଦୀ କରି ସେ        ଆଣିଲେ ତୁମକୁ
ହରିଲେ ତୁମର ସକଳ ଶିରୀ ।

କଅଣ କହୁଚ        କେନାମଣି ଏବେ
ଦୋଷର ଦଣ୍ଡ କଅଣ ଚାହିଁ ?"
"ଦଣ୍ଡ କଅଣ        କହିବ କାପର ?
ତୁମ୍ଭଙ୍କର ଯା ଅଭିପ୍ରାୟ ।"

"ଦଣ୍ଡରୁ ଏବେ        ମୁକ୍ତ ଦେଉଚ ।"
ଅଜିତ ସିଂହ ଅଭୟ ଦେଲେ
ଜୀବନ ଦଣ୍ଡ        ଫେରାଇ ନେଉଚ
ଜୀବନର ତୁମ ମରଣ ବେଳେ ।"

"ଦେଖି ପାରୁଚ ତ        ସମ୍ମୁଖେ କିଏ ?
ସୋନପୁର ରାଜା ସିଂହ ଦେଓ,
ପାଖରେ କିଏ ସେ        ଠିଆ ହୋଇଅଛୁ
ଜଗତର ତୁମ ବଜସ୍ବୀ ଯେ ହୋ ।

ଜରଓର ଆଜ୍ଞା ! ରକ୍ଷିତ ମୋ ମାନ,
ଜଗତେ ରକ୍ଷିତ ମୋହର ନାଆଁ,
ତୁମ ରାଇଜରୁ ବଧାଇ ଦେଉଚ
ତାହାକୁ ଷାଠିଏ ଖଣ୍ଡ ଗାଆଁ ।

କଅଣ କହୁଚ ଜେନାମଣି ରାଜା
କଅଣ ତୁମେ ଯେ କହୁଚ ତେବେ ?"
"ମଣିମାଙ୍କର ଅଧୀନରେ ମୁହିଁ
ମଣିମାଙ୍କର ଇଚ୍ଛା ଏବେ ।"

"ଜରଓର ତୁମେ ଚହୁଣ ସେନାଙ୍କ,
ବେଢ଼ାଖୋଲ ରଣେ କରବ ଯାହା
ସେଇଥି ପାଇଁ ତ ଦେଉଚ ତୁମକୁ
ମୋର ରାଇଜରୁ ଷାଠିଏ ଗାଆଁ ।"

"ପିତୃ ଆଦେଶ, ପିତୃ ଆଶିଷେ,
ଧରଥିଲ୍ ମୁହିଁ ସମର ରାହା,
ବଧାଇ ମୋହର ଯୋଗ୍ୟ ନୁହଇ
ପିଅରଙ୍କର ପ୍ରାପ୍ୟ ଯାହା ।"

"କଅଣ ତୁମକୁ ବଧାଇ ଦେବି ମୁଁ
ଅମର ତୁମର ଶୌର୍ଯ୍ୟ ପାଇଁ ।"
ସମ୍ବଲପୁର- ମହାରାଜା ସେନ୍ତେ
ଜରଓର ମୁଖେ ରହିଲେ ଚାହିଁ ।

ରେଢ଼ାଖୋଲ-ରାଜା କହେଉଥିଲେ ପୁଣି—
"ଅନୁମତି ମିଳୁ ହେ ମହାରାଜ,
ଜଗଓର-କରେ ବଧାଇ ଦେବି ମୁଁ
ସାଦର ବଧାଇ ଦେବି-ମୁଁ ଆଜ ।"

"କଅଣ ଦେବ ହେ କେମାମଣି ରାଜା,
କଅଣ ଏଇକେ କହୁଚ କେବେ ?"

"ଜଗଓର କରେ ଦେବି ମୋ କେମାକୁ,
ସତ୍ୟ ଶପଥ କରୁଚି ଏବେ ।"

"ରେଢ଼ାଖୋଲ ତୁମେ ଆମ ଏ ସକଳେ
ଏତିକରେ ବେଶ୍ ପାଗଳ କତ ।"

"ମଣିମାଙ୍କର ଉଦାରତା ପାଇଁ
ପାଳୁଅଛୁ ମୁହିଁ ତାହାର ସାତ ।"

ସୋନପୁର-ରାଜା, ରେଢାଖୋଲ୍-ରାଜା
ଅନାଅନି ହେଲେ ପରସ୍ପରେ,
ଜଗଓର ଦେଓ ଦେଖୁଥିଲେ ସବୁ
ଉଲ୍ଲାସ ଭରେ ତୃପ୍ତି ଭରେ ।

ହରଷର ଢେଉ ଉଚ୍ଛୁଳି ପଡ଼ିଲା—
"ଜୟ ମହାରାଜ ଅଜିତ ସିଂହ
ଜୟ ସୋନପୁର, ଜୟ ରେଢ଼ାଖୋଲ ।"
—ଉଚ୍ଛୁଳି ପଡ଼ିଲା ଦର୍‌ବାର ।

—✱—

## ତୁଳସୀ ଗୋ !
## ଦୀନଦୁଃଖୀ ତୁମେ କେଉଠୁଣୀ

ରାଜରାଣୀ ନୁହ ତୁମେ,
ରାଜ କନ୍ୟା ନୁହ ତୁମେ,
ତୁଳସୀ ଗୋ !
ଦୀନଦୁଃଖୀ ତୁମେ କେଉଠୁଣୀ;

ରାଜରାଣୀ ଠାରୁ ବଳି,
ରାଜକନ୍ୟା ଠାରୁ ବଳି,
ଯାହା କରିଅଛ ତୁମେ
ଦେଖିଲେ ବି ବିଶ୍ୱାସ ହେଉନ ।।

ବରପାଲି ଗ୍ରାମେ ତୁମେ ଗଢ଼ିଅଛ
ସୁନ୍ଦର ଦେଉଳ,
ପ୍ରତିଷ୍ଠିତ କରିଅଛ ତାହାରି ଭିତରେ
ଶ୍ରୀରାମ, ଲକ୍ଷ୍ମଣ, ସୀତା
ତ୍ରିମୂର୍ତ୍ତି ଦାରୁର ।

ଚୂଡ଼ାକୃଷ୍ଟା, ମୂର୍ଚ୍ଛିତା ଜୀବନ ଭିତରେ
ଜନମ ଲଭିଲ ତୁମେ
କେନ୍ଦ୍ରିକ ଜୀବନ,
ଅଙ୍ଗାରରୁ ହୀରକର ସ୍ତର
ପଙ୍କରୁ କି ପଦ୍ମ-କାନନ ।

ସମ୍ମାନ ସମ୍ପଦ କିଛି ନ ଥିଲା ତୁମର,
ପଥ ଧୂଳି
ଶୈଶବରେ ବୁଜି ଦେଲେ ଆଖି;
ପଡ଼ିରହିଲ ତ ଏଇ ଧରଣୀ ପଥରେ
ଏକା ଏକା ଅଥ ଜରମାଖୀ ।

କେଉଁ ମିଥ ରହିଗଲ
ସହିଗଲ ନିଃସଙ୍ଗ ଜୀବନ
ହୃଦୟର ତଳେ ତବ
ରହିଥିଲ ଗୋଟିଏ ସପନ ।

ସପନ ନୁହଇ ତାହା ଜୀବନର
ଏକ ଦୁରାକାଙ୍କ୍ଷା
ସେଇଦିନ ଜଣାଗଲା ଯେଉଁଦିନ
ତୁମେ ଅନୁରାଗେ
ତୁମର ବଢ଼ିଲ ସେଇ ମାଳଞ୍ଚର ଆଗେ
ବାଢ଼ି ଦେଲ ବ୍ୟାଖ୍ୟା—

"ରାମ ଲକ୍ଷ୍ମଣଙ୍କର ଲାଗି ଗଢ଼ାଇବ
ଗୋଟିଏ ଦେଉଳ
ଅତୁଳ ସିନ୍ଧୁରେ ମୁହିଁ ସନ୍ଧାନର,
ବିଶ୍ୱାସର କୂଳ ।"

"ଦେଉଳର କେଉଁ କଥା ଜାଣେ ନା ମୁଁ
ମାତ୍ର ଜାଣି ନ ଥିଲି ଏ ଗୁପତ ବାସନା,
ଏତେ ବଡ ଦୁରାଶା ଯେ କରିଅଛୁ
ବଡ଼ ବିଡ଼ମ୍ବନା !

ଆମର ଏ ବରପାଲି ବସନ୍ତ ଭିତରେ
ରହିଅଛି ମନ୍ଦିର ବହୁତ,
ନୀଳକଣ୍ଠେଶ୍ୱରଙ୍କର
ଜଗନ୍ନାଥଙ୍କର
ପୁଣି
ସମଲେଇଙ୍କର ।

ରାଜ ବଇଭବ ତହିଁ ଖଟାଇ ବିଶେଷ
ରାଜମାନେ ଅଛନ୍ତି ଗଢ଼ାଇ
ତୋହର ସମ୍ପଦ ଅଛି ?
ଦିଅଙ୍କ ମନ୍ଦିରଟିଏ ଗଢ଼ାଇବା ପାଇଁ ।

ଭିତରେ ଭିତରେ ରୁହି
କଅଣ ଯେ ସ୍ୱପନ କରୁଚ୍,
ବାମନ ହୋଇ ଲୋ ରୁହି
ମନେ ମନେ ଚନ୍ଦ୍ରମା ଧରୁଚ୍ !"

"ଚନ୍ଦ୍ରମା ଧରୁନ ମୁହିଁ ମହାପ୍ରଭୁ
ରାମଚନ୍ଦ୍ର ନକେ,
ଏ ସାହସ ଦେଇଛନ୍ତି ମୋର ଏଇ
ହୃଦସ୍ଥ ରାଘବେ ।

ଚନ୍ଦନ ତଳେ ଆମ୍ଭେ ଅର୍ଦ୍ଧରାତେ
ଦେଖିଲୁ ସପନ,
ମୋହନ କୁଟୀରେ ଉଭା ପ୍ରଭୁ ରାମ,
ସଙ୍ଗତରେ ମୈଥିଳୀ, ଲକ୍ଷ୍ମଣ ।

ସ୍ୱର ବାଜି ଉଠୁଥିଲା—
"ତୁଳସୀ ଲୋ,
କଳିଯୁଗେ ଜନମିଚୁ ତୁ ମୋର ଶ୍ରମଣା,
ତୋର ଭକତରେ ମୁହିଁ ଆସିଅଛୁ
ହୋଇ ଆଜି ଋଣୀ ।"

"ଶ୍ରମଣା ଯେ କାହିଁ ପ୍ରଭୁ
ତୁଳସୀ ମୁଁ,
ଅତି ଅକିଞ୍ଚନ,
କେଡ଼େ ବଡ଼ କରି ମତେ
କହୁଅଛ
ପ୍ରଭୁ ନାରାୟଣ ।"

"କହୁଛ ଲୋ ଜାଣେନ ମୁଁ ଶ୍ରମଣା ସେ
ଶ୍ରମଣା କିଏ ସେ
ତାହା ଭକ୍ତି ତୋହ ପ୍ରାଣ ତଳିଅଛୁ,
ପ୍ରଭୁଙ୍କର ପୂଣ୍ୟ ପାଦ ତଳେ ।

"ଶ୍ରମଣା ଗୋଟିଏ ନାରୀ
ଶବର କୁଳର କନ୍ୟା
ରାମ ପ୍ରଭୁଙ୍କର ଜଣେ ପରମ ଭକତ,
ମତଙ୍ଗ ତପସ୍ୱୀଙ୍କର ଆଶ୍ରମରେ
କାଟୁଥିଲା
ଗ୍ରୀଷ୍ମ ବର୍ଷା ଶରତ ହେମନ୍ତ···
କୁହୁଡ଼ି ଭିତରେ ସିଏ ଦେଖୁଥିଲା
ସୁବର୍ଣ୍ଣର ଉଷା
କେଉଁଦିନ ପ୍ରେମାତୁରା ନବାଗତ
ଜୀବନର ତୃଷା ।

ମୁନି କହୁଥିଲେ ତାକୁ—"ଶ୍ରମଣା ଲୋ,
ସିଦ୍ଧ ହେବ ତୋର ମନସ୍କାମ,
ମୋର ଏଇ ଆଶ୍ରମକୁ ଆସିବେ ଲୋ
ଆସିବେ ଲୋ ଦିନେ
ତୋର ପ୍ରାଣ ଅଭିରାମ
ରାମ ।"

ସେଦିନୁ ଶ୍ରମଣା ତହିଁ ପ୍ରାଣରେ ପିପାସା ଘେନ
ଚାହିଁଥିଲା ପଥ,
ବନ ପଥେ ବୁଲୁଥିଲା, ବିରହ ବିଧୁର ପ୍ରାଣେ
ହୋଇଥିଲା ତହିଁ ଉପଗତ ।

ମତେ ପୁଣି କହୁଛନ୍ତି—"ଶ୍ରମଣା ପଣକା
ରୁ ଚିହ୍ନତ୍ ମୋର ପଥରେଖା,
ନୟନର ପଥେ ତୋର ଆସିବ ଲୋ
ଦେବ ତତେ ଦେଖା ।"

"ମୋହର କୁଟୀରେ ପ୍ରଭୁ ଆସନାହିଁ,'
ଆସନାହିଁ କେବେ
ସ୍ୱତନ୍ତ୍ର ଦେଉଳ ଏକ ତୁମପାଇଁ
କରୁଅଛୁ ଏବେ ।"

"ହେଉ ତେବେ,
ଅଟରେ ମୁଁ ଖାଇ ତୁଲେ
ସୀତାଙ୍କର ତୁଲେ,
ପଦ୍ମସ୍ଥବ
ପଦ୍ମସ୍ଥବ
ତୋହର ଦେଉଳେ ।"

"ଦେଉଳ ଲୋ ମୁଁ ଶୁଣିଚ ପ୍ରଭୁଙ୍କର ବାଣୀ
ମୁ ଜାଣିଚ ପ୍ରଭୁଙ୍କର କଥା
ପ୍ରଭୁ ମୋର ଜାଣିଚନ୍ତି ମୋର ଏ ଜୀବନ
ବୁଝିଚନ୍ତି ମୋ ଜୀବନ ବ୍ୟଥା ।

ମୋହର ଠାକୁର ପାଇଁ ଗଢ଼ାଇବ ମୁହିଁ
ଗୋଟିଏ ଦେଉଳ,
ପରତେ ଆପୁନ ମୋର, ପରତେ ଆପୁନ
ଥିଲେ ମୋ ଦେଉଳ ।"

"ବୁଝିଲି ବୁଝିଲି ଏବେ ଦେଉଳ ଲୋ
ତୋହର ଅନ୍ତର
ପୂର୍ଣ୍ଣ କରି ଦେବେ ତୋର ଅଭିଳାଷ,
ଠାକୁର ତୋହର ।"

ସେଇ ଦିନ ତୁଣ୍ଡ ଖୋଲି ଡାକଥିଲ ତୁମେ
ଦଅଙ୍କୁ ଆବୁଲେ,
"ତୁମର ଦେଉଳ ପ୍ରଭୁ ଗଢ଼ ଆସି ଜଳେ,
ଆବର୍ଭିତ ହୁଅ ସେ ଦେହଲେ ।"

"ତୁଳସୀ ଲୋ, ତୋହ୍ର କଥା; ତୋହ୍ର ପାଇଁ
କଅଣ କହିବ ?
ତୁଳସୀ ଲୋ, ତୁ ଗଢ଼ିବୁ, ତୁ ଗଢ଼ିବୁ,
ମୁଁ ଆସି ରହିବ ।"

x x x

ବହୁତ ପଥର ବାଲି ଜମା ହେଲା ଆସି,
କୁଟା ହେଲା ଚୂନ,
ରାଜ-ମିସ୍ତ୍ରୀ କାରଗର ତୋଳିଲେ ଦେଉଳ
ତୁମେ ବସି ଦେଖୁଥିଲ ଦେଇ ମନ ମୁନ ।

କାରୁ-ଶିଳ୍ପୀ ତିଆରିଲେ ଦାରୁ-ମୂର୍ତ୍ତି
ଖୁବୁ ଚମତ୍କାର
ଶୁଭ ଯୋଗେ, ଶୁଭ ମହୁରତେ,
ଠାକୁର ପ୍ରତିଷ୍ଠା ହେଲା ଜନତାର କଳ-କୋଳାହଳେ
ଶଙ୍ଖ-ବାଦ୍ୟ-ରବେ ।

ତୁମେ ଆଗୋ ପୁଣ୍ୟବତୀ ସକାଳ ସଞ୍ଜରେ
ଦଅଙ୍କ ସୌରଭ ଦେଇ ହୃଦସ୍ଥ କଞ୍ଜରେ

ଗାଉଥିଲ ଜୀବନର ଗୀତ,
"ଜୟ ରାମ
ଜୟ ସୀତା
ଜୟ ସତ୍ୟମିଥ୍ୟା।"

ତୁଳସୀର ପୂଜା ଯଥା ଘରେ ଘରେ,
ଗ୍ରାମରେ ଗ୍ରାମରେ,
ତୁଳସୀ ଗୋ ତୁମ ପୂଜା ହେଉଅଛି
ହୃଦୟ-ଧାମରେ ।

—*—

"ମୋ ଜୀବନ ପଛେ
ନର୍କ କୁଣ୍ଡେ ପଡୁ"

"ଆମର ଏ ଅଙ୍ଗ ନଦୀ—ତଟ ଏ ପାଶରେ
ଖଲ୍‌ଆପାଲ୍‌ରେ
ତନ୍ତୁପୁଞ୍ଜେ ଯେଉଁପରି ସେଠି ବାନ୍ଧୁ ପ୍ରସାରିତ ବଟ,
ଶ୍ରମ ସ୍ୱେଦ
ସିକ୍ତ ହୋଇ
ବାନ୍ଧଚ ମହିମା-ଗାଦୀ, ବସ୍ତ୍ରାବୃତ ମଠ ।

ମଥା ପରେ ଜଟ ବାନ୍ଧ
କୁମ୍ଭୀ ପଟ
କଉପୁନ ମାରି,
ଶବ୍ଦ ଶବ୍ଦ ଅଲେଖ ବାବାଜି
ଧୂନ ଜାଳି,'
ଗଞ୍ଜା ପିଇ ଧୂଆଁ ଛାଡ଼,

ଗ୍ରୀଷ୍ମ ମାସରେ ଅବା ମାଘୁଆ ଜାଡ଼ରେ
ଅଲେଖ-ଭଜନ ସହ ଖଞ୍ଜଣୀ-ମାଡ଼ରେ
କେବେ କେବେ
ରାତ ରାତ ହେଉଛନ୍ତି ମତ୍ତ,
ସକାଳେ ସନ୍ଧ୍ୟାରେ ପୁଣି
ସଙ୍ଗ ଛନ୍ତି ଦଣ୍ଡ-କସରତ,
ସେଠି ସେଇ ନଦୀର ବାଲିରେ
ଖଲିଆପାଲିରେ ।"

ସ୍ୱର୍ଣ୍ଣପୁର ରାଇଜର ଅଭିଜାତ
ବିପ୍ର କେତେ ଜଣ
ଦଳ ବାନ୍ଧି ରାଜାଙ୍କର ସମ୍ମୁଖରେ
କଲେ ନିବେଦନ—

"ଅବଧାନ ହେଉ ସ୍ୱାମୀ,
ଅଲେଖ-ବାବାଜିଦଳ
ବାହାର ସେ ସ୍ଥାନୁଁ ।
ଗାଁ ଗାଁ ବୁଲି ବୁଲି
ପଥେ ପଥେ ଘୂରି ଘୂରି
ଭଗତଙ୍କ ଘରେ
ନିର୍ଭିନ୍ନରେ
ଚଅଣ ସନ୍ତୁଳା ସହ ଶୁଖୁଆ, ପଖାଳ
ଭୋଜନ ପକାଇ ବେଶ୍ କାଟୁଛନ୍ତି କାଳ ।

ସେମାନେ କରନ୍ତି ଭିକ୍ଷା
ପ୍ରାୟ ସବୁ ଜାତିଙ୍କର ଘରେ,
ମାତ୍ର ରଜାଙ୍କର ଘରେ
ଆମର ଏ ବ୍ରାହ୍ମଣଙ୍କ ଘରେ
ଭୋଜନ କରିବା ତାଙ୍କ
ଧର୍ମରେ ନିଷିଦ୍ଧ,
କଅଣ ଜାଣିନ୍ତୁ ଆମେ ?
ଆମ ଜାତି ସର୍ବଶାସ୍ତ୍ରବଦ୍ଧ୍ ।"

ଆଉ ଜଣେ ଶୁକ୍ଳ କେଶ ବୃଦ୍ଧଜନ
ଜଣାଇଲେ ଅତି ଉଚ୍ଚ ସ୍ୱରେ—
"ସେମାନେ ବି ଅନ୍ନପାନ କରନ୍ତିନି
ଧୋବାଙ୍କର ଘରେ ।"

ରାଇଜର ରଜା ପୁଣି ଶୁଣାଇଲେ
ବିଦ୍ରୂପର ଗିର—
"ମହିମା ବାବାଙ୍କ ଚେଲେ
କରିଚନ୍ତି ସ୍ଥିର,
ରଜା,
ବିପ୍ର,
ଧୋବା,
ଉଚ୍ଚଜାତି ସମାନ ଶ୍ରେଣୀର !"

ଆଜ୍ଞ ଜଣେ ଉଚ୍ଚାରିଲେ—"ହାୟ ରେ ବିଧାତା

ହୀର ଜହର ସମତୁଲ

କରୁଅଛୁ ଶ୍ୟାମ ଶେଠ

ଭେଡ଼ଙ୍କ ଚତୁର ।

ରାଜା-କୃପା ନ ଥିଲେ କି କରି-ପାରୁଥାନ୍ତା ?"

ଶ୍ୟାମ ଶେଠଙ୍କର କଥା ଚର୍ଚ୍ଚା କରି

ଅନ୍ତରେ ଅନ୍ତରେ

ଧର୍ମ ପାଇଁ କରିଛି ମୁଁ ଦାନ,

ମହିମା ଗୋସାଇଁଙ୍କର ଗାଦି ବାନ୍ଧିବାକୁ

ଅଙ୍ଗନଦୀ-ତଟପରେ

ଦେଇଛି ମୁଁ ସ୍ଥାନ ।

ମାତ୍ର ଏବେ ତୁମେମାନେ କରୁଛ କଅଣ

ଛତ୍ରଗଣ,

ଆଶୁ ପ୍ରତିକାର ତାର

କରିବାକୁ ଚାହୁଅଛ ଯଦି

ସେଥିପାଇଁ ଶୀଘ୍ର ଶୀଘ୍ର କର ଆୟୋଜନ ।

କି ଭାବଚ,

କି ଶୁଣୁଚ ?

ତୁମର ବା କିବା ଅଭିପ୍ରାୟ ?

ଖୋଲି ଖୋଲି ଏବେ କହିଯାଅ ।"

"ରାଜ୍ୟର ମଙ୍ଗଳ ଲାଗି ଏ ରାଜ୍ୟରେ
ଅନୁଷ୍ଠିତ ହେଉ ଏକ ଯଜ୍ଞ
ବ୍ୟବସ୍ଥା କରନ୍ତୁ ଆମେ,
ନିଶ୍ଚୟ ତହିଁରେ ଜ୍ଞାନ
ପାଇ ଯିବେ
ସେଇ ସବୁ ଅଜ୍ଞ ।
ଜ୍ଞାନ ପାଇବାର ବୀଜ
ଅଛଇ ତହିଁରେ ।"

ଉଚବାକ୍ ବପ୍ର ଏକ
ସଙ୍ଗେ ସଙ୍ଗେ
ଆପଣାର ବକ୍ତବ୍ୟ କହିଲେ—

"ସେମାନଙ୍କୁ କରାଇବା ଅନଳ-ପରୀକ୍ଷା
ତହିଁରେ ସେମାନେ ନିଶ୍ଚେ ପାଇଯିବେ ଶିକ୍ଷା,
ଅଗନଦୀ ତୀର ଛାଡ଼ି
ପଳାଇବେ କାହିଁ ।
ଏ ରାଜ୍ୟର ଅସମ୍ମାନ
ଏ ରାଜ୍ୟର ଅପମାନ
ଲୁଚିଯିବ ଚିରକାଳ ପାଇଁ ।

ସେମାନେ ଯେ ରହୁଚନ୍ତି
ଝଲ୍ଲଆପାଲ୍ଲରେ,
ସେମାନେ କି ବୁଲିଯିବେ
ଖାଲରେ ଟାଲରେ ?"

ଯେ ଯଜ୍ଞରେ ହେବ ପରୀ
    ସେମାନଙ୍କ ଅନଳ-ପରୀକ୍ଷା,
ପରୀକ୍ଷାରେ ହାରିଯିବେ
    ଉତ୍ତୀର୍ଣ୍ଣ, ଉତ୍ତୀର୍ଣ୍ଣ,
    ଜୀବନରେ ପାଇ ଯିବେ ଶିକ୍ଷା ।”

“କଅଣ କହୁଚ ତୁମେ ପରିଷ୍କାର କୁହ
    ଲମ୍ବାଅ ନା କଥା,
କପରି ପାଇବେ ଶିକ୍ଷା
    କରୁଅଛ କଅଣ ବ୍ୟବସ୍ଥା ?”
“ତୁମ୍ଭଙ୍କର ଅଜ୍ଞା ହେଉ,
ତୁମ୍ଭଙ୍କର ଆଜ୍ଞା ଯାଉ
    ଗ୍ରାମ ଭେଇ ସାଧୁଙ୍କର କଟ,
ସେମାନେ ଦେଖାନ୍ତୁ ଏବେ
    ସେମାନଙ୍କ ଧର୍ମର ଶକତ ।

ଯଜ୍ଞ-ପୂର୍ଣ୍ଣାହୁତି ପରେ
କେହି ତାଙ୍କ ମହିମା-ଭଗତ
ଯଜ୍ଞ କୁଣ୍ଡେ ଝାସ ଦେଉ,
ତା’ ଭିତରୁ
ହୋଇ ଯେବେ ଅନାହତ
ସ୍ମିତ ମୁଖେ ଆସିବ ବାହାରି,
ଖଲଆପାଲରେ ତେବେ ରହିବେ ସେମାନେ
ସସମ୍ମାନେ,
ନୋହିଲେ ତୁରନ୍ତ ସେଠୁ ଚାଲିଯିବେ
ସ୍ଥାନ କରି ଖାଲି ।”

ଉଚ୍ଚ କରତାଳି ସହ ଉଚ୍ଚ ସ୍ୱରେ
      ଜଣାଇଲେ କ୍ଷୁବ୍ଧ ଛାତ୍ରଦଳ—
"ଯୋଗ୍ୟ ଏ ବ୍ୟବସ୍ଥା ଗୁରୁ,
      ଗୁରୁଙ୍କର ଆଜ୍ଞା ହେଉ,
      କ୍ଷିପ୍ର-କ୍ଷିପ୍ରତର ।"

ଉଚ୍ଚ ସ୍ୱରେ ରାଜା-ଆଜ୍ଞା ହେଲା ଉଚ୍ଚାରିତ—
      "ଦ୍ୱିଜଗଣ,
      ଉପଯୁକ୍ତ ଭୂମର ବ୍ୟବସ୍ଥା,
      ଯଜ୍ଞ ଆୟୋଜନ କର
ଏଇ ମୁହୂର୍ତ୍ତିରେ ଆମ୍ଭେ
      ଦେଉଅଛୁ କଥା ।"

୨

"ଶୁଣିଲଣି ଶିଷ୍ୟବର୍ଗ ଏଇ ଅକସ୍ମାତ
ଆମର ଗାଦକୁ ଆଜ
      ଆସିଅଛି
      ଆଗ୍ନେୟ ସମ୍ବାଦ ।
ସ୍ୱର୍ଣ୍ଣପୁର ଦରବାରୁ
ଆସିଅଛି ଏକ ରାଜ-ଆଜ୍ଞା ।"

ରାଜା ନୀଳଧର ସିଂହ ବୁଝିଥିଲେ
ଏଇ ଅଙ୍ଗନଦୀ-ତୀରେ,
ଗାଦ ପାଇଁ
ମଠ ପାଇଁ
ଆମର ସୁବିଧା ଲାଗି ଦେଇଥିଲେ ଜାଗା ।

ଭଗତବୃନ୍ଦଙ୍କ ପାଇଁ
ଦେଉଥିଲେ ବହୁତ ସମ୍ଭାର
ତାହିଁକି ସେ
ଆଙ୍କ ଏବେ ଦେଉଛନ୍ତି
ପହାର-ବାହାର ?
କଅଣ କରିବା ଏବେ
ଆସିଅଛୁ ପରୀକ୍ଷାର ଚରମ ମୁହୂର୍ତ୍ତି,
ଅନଳ-ପରୀକ୍ଷା ପାଇଁ
ବର୍ତ୍ତମାନ ହୁଅ ରେ ପ୍ରସ୍ତୁତ ।"

କର ଯୋଡ଼ି ପନ ବାବା ନିବେଦିଲେ—
"ହଙ୍ଗେ ସଙ୍ଗେ ବଚନ ମୁଁ ଦେଲି
ଅଗ୍ନିକୁଣ୍ଡେ ଝାସିବାକୁ
ପ୍ରସ୍ତୁତ ମୁଁ ହେଲି ।"

"ଏ ପୂର୍ଣ୍ଣ ସୁଯୋଗ ତେବେ ମିଳୁ ତାହା ହେଲେ ।"
ନମ୍ର ମାଥେ
ଯୁକ୍ତ ହାତେ
ମଧୁବାବା ଜଣାଇଲେ ହେଲେ
ସାମନାକୁ ଭିଡ଼ି ଆସି
ଆଉ ଜଣେ ଚେଲା
ସମୁଦ୍ର ଜୁଆର ପରି
ଉଦ୍‌ବେଳିତ ହେଲା—

"ଜମୁର୍ଦ୍ଧ ନଗ୍ରୀ କ ଏକ
ପଡ଼ଙ୍ଗ ପର୍ବଏ
ମୁହିଁ ଲମ୍ଫ ଦେବ ପ୍ରଭୁ,
ଅଗ୍ନିକୁଣ୍ଡେ ଦହନର ଦାହେ ।
ଅଗ୍ନିକୁଣ୍ଡେ ଝାସ ଦେବା
ନୁହେ ଅସାମାନ୍ୟ,
ତବ ଆଶୀର୍ବାଦ-ବଳେ
ଅନାହତ କଳେବରେ
ତା ଭିତରୁ ବାହାର ଆସିବା
ପରୀକ୍ଷାରେ ଜୟୀ ହେବା,
ମୋହର ତ କାମ୍ୟ ।"

ଭୀମ ସ୍ୱେଇ ଉଚ୍ଚାରଲେ—
"ଥାଉ ଥାଉ ଅଭିପ୍ରାୟ ତୁମମାନଙ୍କର;
ପରୀକ୍ଷା ମୁଁ କରୁଥିଲି
ଅନଳର କୁଣ୍ଡେ କେ ଲମ୍ଫ ଦେବ ମୁହିଁ,
ସିଦ୍ଧାନ୍ତ ଏ ସକଳ ମୋହର ।"

ସମସ୍ୱରେ ବହୁ କଣ୍ଠ ଉଠିଲା ଉଚ୍ଚାର,
"ତାହା ହେବ ନାହିଁ ପ୍ରଭୁ,
ତାହା ହେବ ନାହିଁ,
ଏତେ ଏତେ ସଙ୍ଖ୍ୟାରେ ଯେ
ଶିଷ୍ୟ ରହିଅଛୁ,
ସକଳେ ପ୍ରସ୍ତୁତ ଆମେ
ଏ ପରୀକ୍ଷା ପାଇଁ ।

ଆପଣ ଯାହାର ମାଥେ
ହାତ ଥୋଇ ଆଶୀର୍ବାଦ ଦେବେ,
ଅନଳ-କୁଣ୍ଡରେ ସିଏ
ଝାସିବାକୁ ପାରଙ୍ଗମ ଏବେ ।"

ଗ୍ରାମ ଷେଇ ଶୁଣାଇଲେ—
"ଆମର ଏ ମଣ୍ଡଳୀରୁ
ଅଭିରାମ ତୃଷ୍ଣାସ୍ୱ ବଳତା,
ପରୀକ୍ଷାକୁ ତାହାକୁ ମୁଁ ପଠାଇବି,
ଶେଷ-ସମାଧାନ ମୋର
ନିଶ୍ଚିତ ଏ କଥା ।"
ନୀରବ ନିଶ୍ଚଳ ସର୍ବେ
ଆଜ୍ଞା ଶୁଣି ଗ୍ରାମ ଷେଇଙ୍କର,
ଧପକ୍ ଶୁଭ୍ରୂଳ ମୁଖ
ଯୁବକର
ହୋଇଗଲା ଦୀପ୍ତ ସମୁଜ୍ଜ୍ୱଳ ।

୩

ଅଗ୍ନିକୁଣ୍ଡ ପାଶେ ଉଭା
ହଏ ସେ ଯୁବକ
ନୟନରେ ଦୀପ୍ତ ଆଶା,
ବଦନରେ
ସସ୍ମିତ ପୁଲକ ।
ଯଜ୍ଞ ପଇଁ ସେହି ସ୍ଥାନେ
ଯେଉଁମାନେ
ହୋଇଥିଲେ ଠୁଳ,
ଅନାଇ ଅଛନ୍ତି ତାକୁ ବିସ୍ମିତ ବ୍ୟାକୁଳ ।

ନୃପତି ବି ସେଇପରି
ଝଷ୍ଟଲକେ ଅଛନ୍ତି ଅନାଇ,
ହଠାତ ତାହାଙ୍କ ପ୍ରାଣେ
କି ଲବ ସେ ଉଠିଲା ଘନାଇ ।
କଣ୍ଟକ ଉଠିଲା ଦେହ,
ପାଦପାଣି ହୋଇଲା ଅବଶ
ଜନ୍ମେ ମଥା ଜର୍ଦ୍ଧପଡ଼ି
ପରଶିଲା ବେଦୀର ଉରସ ।
କ୍ଷଣକରେ ଶିବିକାରେ
ରାଜପରିଜନେ
ତହୁଁ ତାଙ୍କୁ ଘେନିଗଲେ
ସସମ୍ଭ୍ରମେ ରାଜନିକେତନେ ।
ଦୁଇଦଣ୍ଡେ ବାର୍ତ୍ତାବହ ଆସି
ଜଣାଇଲା ସମସ୍ତଙ୍କ ଆଗେ—
"ରାଜା ଜଳଧର ସିଂହ
ଦେହ ତ୍ୟାଗ କଲେ ଏଇଲାଗେ ।

କୁମାର ପ୍ରତାପରୁଦ୍ର
ରାଜଦଣ୍ଡ କରେ
ସିଂହାସନେ ଅଧିରୂଢ଼ ଏବେ,
ପିତାଙ୍କର ମୃତ ଦେହ
ଉଠିବାକୁ ରାଜଆଜ୍ଞା ଦେବେ ।
ଏଇକ୍ଷଣି ସାଙ୍ଗ ହେଉ,
ଶୀଘ୍ର ହେଉ ସାଙ୍ଗ
ରାଜ୍ୟର ଏ ମହୋତ୍ସବ,
ରାଜ୍ୟର ଏ ଯାଗ ।

ଅଗ୍ନି-ପରୀକ୍ଷାରେ ଏବେ
ମହିମାଙ୍କ ଭକ୍ତଗଣ
ଜୟଯୁକ୍ତ ଯଥା,
ଖଲ୍ଲିଆପାଲିରେ ଗାଦି ରହିବାର
ଉପଯୁକ୍ତ କଥା ।"

୪

"କଅଣ ଘଟିଲା ପ୍ରଭୁ,
କବା ଯଜ୍ଞ କବା ଏଇ ଯାଗ,
ରାଜା ଜଳଧର ସିଂହ
ଅକସ୍ମାତ୍ କଲେ ଦେହ ତ୍ୟାଗ ।"
ଶ୍ରୀମ ଭୋଇଙ୍କର ପାଶେ
ଠୁଲ ହୋଇ ଶିଷ୍ୟ ଦଳ ଦଳ,
ଉଠାଇଲେ ଗୁରୁଚରଣ,
ସଫ୍ରୀଘର କଳକୋଳାହଳ ।
"ଦୁଷ୍କୃତର ପ୍ରାୟଶ୍ଚିତ
ହେଲା ଉପଯୁକ୍ତ,
ପ୍ରାଣ ହାରଇଲା ରାଜା
ଭୁଲ୍ ତାହା
ଆପଣଙ୍କ ମହିମାର କୃତୀ ।"

"କି କହୁଚ ଆରେ ଅଜ୍ଞ ?
ଅଜ୍ଞାନ, ଅବୋଧ,
ରାଜାଙ୍କର ଦେହାନ୍ତରେ
ତୁମେମାନେ ଲଭୁଅଛ ଆନନ୍ଦ ଆମୋଦ ।

ହିତକାଂକ୍ଷୀ ଥିଲେ ରାଜା
ଆମମାନଙ୍କର
ଆମ ପାଇଁ ଦେଉଥିଲେ
ବହୁତ ସୁଯୋଗ
ବହୁ ଅର୍ଥ,
ବହୁତ ସଂବଳ ।
ଆପଣାର ହିତାହିତ ଜ୍ଞାନ ରାଜା
ପର ବୁଦ୍ଧି ବଳେ
ହୁଡ଼ିଗଲେ ମନରଦ୍ୱନ୍ଦ୍ୱରେ ।
ମୁଁ ପୁଣି ହୋଇଚ ଆଜ
ରାଜାଙ୍କର ମୁଖର ନିଦାନ ?
ମୋହର ମହିମା ବୋଲି
ଉଚ୍ଛ୍ୱସିତ ହେଉଅଛ
ଆରେ କ୍ଷୁଦ୍ର ପ୍ରାଣ ।



ମହିମା କି, କାଳିମା କି ଜାଣୁଚ ମୋହର
କି ଜାଣୁଚ ?
ଆରେ ଆରେ ଅଜ୍ଞଜନଦଳ ।
କହିବାର କଥା ମୋର
ଦୂରେ ଥାଉ
ଆରେ କ୍ଷୁଦ୍ର ପ୍ରାଣ ।

ଜୀବନ ମୋହର ପଛେ ନର୍କ କୁଣ୍ଡେ ପଡ଼ୁ
ଜଗତ ଉଦ୍ଧାର ପାଉ,
ବଳିଷ୍ଠ ଏ ଧର୍ମ,
ତୁମେ ରେ ନିର୍ବୋଧ ଆଜ
ବୁଝିଚ କି ସେ ଧର୍ମର ମର୍ମ ।

ଅନଳ ପରୀକ୍ଷା ପାଇଁ
ଆଗଭର ହୋଇଥିଲ ତୁମେ,
ଅନଳ ପରୀକ୍ଷା ଏ ଯେ
ଆସିଅଛି,
କେଉଁପରି ରହିବ ମଉନେ ?

ଏ ଗାଦି, ଏ ମଠ ଖ୍ୟାତି,
ରହିଗଲା ଯେଉଁ ଧର୍ମ ବଳେ
ତୁମେ କରେ ଅର୍ପଣ
ଆଶ୍ରା ନେବ ସେହି ଧର୍ମ ତଳେ ?

ଝିଲିଆପାଲିରେ ଆଜ
ତୁମପାଇଁ
ସ୍ଥାନ ନାହିଁ ।
ଆଜ ଶୀଘ୍ର ଛାଡ଼ି ଚାଲିଯାଅ,
ଏକାକୀ ଏ ପ୍ରାନ୍ତେ ରହି
ମୁଁ ଭଜିବି ଅଲେଖ, ଅଲେଖ
ତାଇ ମୋର ଶେଷ ଅଭିପ୍ରାୟ ।”

ବଜ୍ର ପାତ ହେଲା ସତେ
ହୁଲୁକଲା ଶିଷ୍ୟଙ୍କର ଛାତି,
ଧର୍ମର ସୃଷ୍ଟିରେ ହେଲା
କିବା କୀର୍ତ୍ତି,
କିବା ଅପଖ୍ୟାତି ?

•

ଅଚରେ ବଦ୍ୟୁତ ପଣ
ଜାଗି ଉଠି ଘନଦାସ
ପ୍ରମୁଖ ବାବାଜୀ,
ଜଣାଇଲେ—"କହ ପ୍ରଭୁ,
କାହିଁ ଯିବୁ ଆଜ ?

ପ୍ରଦୀପ୍ତ ପ୍ରଦୀପ ସମ ଜଳୁଅଛ
ଆଲୋକ ବିସ୍ତାରି,
ଆମେ ସେ ତିମିର ପୁଞ୍ଜ
ପାଦତଳେ ପଡ଼ି ଅଛୁ,
ଆମକୁ କେମିତ ପ୍ରଭୁ
ଦେବ ଅପସାରି ?"

—X—

# ଇତିକଥା ନୁହେଁ,

## ଇତିହାସ......

ସେଦିନ ବୈଜଲ ଦେବ
ପାଟନାର ଚୌହାନ ନୃପତି
ପୁଲକ-ପ୍ରଫୁଲ୍ଲ କଣ୍ଠେ
ବୋଇଲେ—"ହେ ମନ୍ତ୍ରୀ;
ମୋ ଦେଶର ସୁପଣ୍ଡିତ ବିପ୍ରଗଣେ
ତୁରନ୍ତ ଡକାଅ,
ତାଙ୍କ ସଙ୍ଗେ ଆଲୋଚନା
କରିବାକୁ ମୋର ଅଭିପ୍ରାୟ ।"

ରାଜ-ନିମନ୍ତ୍ରଣ ପାଇ ନାନା ସ୍ଥାନରୁ
ବ୍ରାହ୍ମଣ ପଣ୍ଡିତ
ଦରବାରେ ମିଳି ଗଲେ ଶତାଯୁକ୍ତ
ପାଟ ଯଥା-କୁଣ୍ଡଳ-ମଣ୍ଡିତ ।

ପରମ ଆଦରେ ରାଜା ଜଣାଇଲେ
ବିନମ୍ର-ବଚନେ—
"ବ୍ରାହ୍ମଣ ପଣ୍ଡିତେ ଶୁଣ
ସଙ୍କଳ୍ପ ମୋ ରହିଅଛି ମନେ ।

ଜାଣି ଥିବ ତୁମେମାନେ
ଇତିହାସ ଆମର ବଂଶର
ତବ ଅବଗତି ପାଇଁ,
କହୁଅଛୁ ଆଂଶିକ ମାତର ।
ଏ ବଂଶର ପ୍ରତିଷ୍ଠାତା ରାମ ଦେବ
ନିଜ ବାହୁ-ବଳେ
ବିଶାଳ ପାଟନା ରାଜ୍ୟ ସ୍ଥାପିଥିଲେ
ଆମ ଏ କୋଶଳେ ।

ପରାଧୀନ କରି ଆଉ,
ଝଡ଼ିଆଳ, ବୋଡ଼ାସମ୍ବରକୁ,
ପାଖ ପାଖ ରାଜ୍ୟ ପୁଣି
ଦର୍ପଭରେ ତୁଲାଇଲେ ଚକ୍ଷୁ ।
ସୁବର୍ଣ୍ଣ ପତ୍ତନ ଦିଗେ ଚଳାଇଲେ
ରଣ-ଅଭିଯାନ,
ଜୟ-ବୈଜୟନ୍ତୀ ତୋଳି
ପାତିଲେ ଆସ୍ଥାନ ।

ବଉଦ, ଆଠମଲ୍ଲିକ ତାଙ୍କ ଆଗୁ
ନ ପାଇ ନିସ୍ତାର,
ସାମନ୍ତ-ରାଜନ ହୋଇ ଅଧୀନତା
କରିଲେ ସ୍ୱୀକାର ।
ଫୁଲଝର ସଙ୍ଗେ ପୁଣି ବିନ୍ଦ୍ରା ନୂଆଗଡ଼
ହୋଇଲେ ଅଧୀନ,
ପାଟନା ରାଜ୍ୟର ସେବା ନିଷ୍ଠାରେ
କଲେ ଅନୁଦିନ ।

ଉତ୍କଳର ଅଧୀଶ୍ୱର ଭାନୁ ଦେବ
      ଶକ୍ତିହୀନ ହୋଇ
ସ୍ଥାନେ ସ୍ଥାନେ ସୃଜି ଥିଲେ ବହୁବୈରୀ,
      ବହୁତ ବିଦ୍ରୋହୀ ।
ତଥାପି ତ ରାମ ଦେବ ସଙ୍ଗେ ଯେତେ
      ବହୁ ଉପାସକ
ମିଳିଥିଲେ ହୋଇ ଅତି
      ଶ୍ରଦ୍ଧା-ପରାୟଣ ।
ଗଜପତି ଆନନ୍ଦରେ ଅନୁଜଙ୍କ
      ଜ୍ୟେଷ୍ଠା ଦୁହିତାରେ
ସଁପି ଦେଇଥିଲେ ତେବେ
      ତାଙ୍କ କରେ ରାଜନ୍ୟ ପ୍ରଥାରେ ।

ମୋର ସେ ପ୍ରପିତାମହ
      ହୋଇ ଧର୍ମାତୁର,
ପାଟନେଶ୍ୱରଙ୍କ ପାଇଁ ତୋଳିଥିଲେ,
      ମନ୍ଦିର ଚତ୍ୱଳ ।

ଜଗନ୍ନାଥ ବଳଭଦ୍ର, ସୁଭଦ୍ରାଙ୍କ
      ଆରାଧନା ପାଇଁ
ଝଟକ ଦେଉଳ ଏକ ଗଢ଼ିଥିଲେ
      ପାଟନାର ସାଇଁ ।”

“ରାମ ଦେବ ଥିଲେ ବୀର, ରଣପଟୁ
      ଥିଲେ ପୁଣି ଧର୍ମ ପରାୟଣ,
ତାଙ୍କ ବାହୁ-ଛାୟା ତଳେ ଶାନ୍ତିରେ ତ
      ରହିଥିଲେ ପଣ୍ଡିତ ବ୍ରାହ୍ମଣ ।”

"ବଜ୍ରସ୍ୱନ୍ ପିତା ମୋର ରଣକ୍ଷେତ୍ରେ
ଥିଲେ ଚଣ୍ଡବୀର;
ଆନତ କରାଇଥିଲେ କେତେ କେତେ
ରାଜାଙ୍କର ଶିର ।

ବାମଣ୍ଡା ରାଇଜପରେ ଦର୍ପଭରେ
ଦେଇଥିଲେ ଧାଡ଼ି,
ପରାଜିତ ରାଜା ତାର ରାଜଧାନୀ
ଯାଇଥିଲେ ଛାଡ଼ି ।

ଫେର ଆସି ସନ୍ଧି ପୁଣି କରଥିଲେ
କୃତାଞ୍ଜଳି ପାତ,
ଭେଟି ରୂପେ ପ୍ରତିବର୍ଷ ଦେଉଥିଲେ
ଷୋଳ ଘର ହାତୀ ।

ପରେ ପରେ ଗାଙ୍ଗପୁର, ବଣାଇ, ବଉଦ,
ନନ୍ଦପୁର, ଖେମଣ୍ଡି, ବସ୍ତର,
ମୋର ପିତାଙ୍କର ସେବା କରିବାରେ
ହୋଇଲେ ତତ୍ପର ।

ମହାରାଜା ନରସିଂହ ଦେବଙ୍କର
ଯୁଗେ ଅବଶେଷେ
ଲକ୍ଷ ଲକ୍ଷ ବୀରମଦେ ହତ ହୋଇ
ଗଲେ ସ୍ୱର୍ଗଦେଶେ ।

ସମରବିଜୟୀ ଥିଲେ ପୂଜ୍ୟପାଦ
ମୋହର ଜନକ,
ସମର ବରଜି ମୁହିଁ ହୋଇଅଛି
ଧର୍ମର ସେବକ ।

ସଙ୍କଳ୍ପ କରଚ ଚେଷ୍ଟା କରିବାକୁ
ବନ୍ଧୁଙ୍କ ମନ୍ଦର,
କି କହୁଚ ମୋ ଦେଶର ସୁଧୀଗଣ
ସୁମତ ସୁଧୀର ?
ଗନ୍ଧମାଦନର ଚୂଡ଼ା ରମ୍ୟ ଅତି
ମନ-ଅଭିରାମ,
ଚିରସ୍ରୋତା ନିର୍ଝରଣୀ ଝରୁଅଛି
ତହିଁ ଅବିରାମ ।
ସେ ଗନ୍ଧମାଦନ ଚୂଡେ ସ୍ଥାପିବାକୁ
ବନ୍ଧୁଙ୍କ ଦେଉଳ,
ସଙ୍କଳ୍ପ କରୁଚ ମୁହିଁ କି କହୁଚ
ବନ୍ଧୁ ବତ୍ସଳ ?"

"ଯଥାର୍ଥ, ଯଥାର୍ଥ ସ୍ୱାମୀ ଆପଣଙ୍କ
ସଙ୍କଳ୍ପ ମହାନ୍,
ଗନ୍ଧମାଦନର ଚୂଡ଼ା ସେଥିପାଇଁ
ଯଥାଯୋଗ୍ୟ ସ୍ଥାନ ।"

ରାମ ମିଶ୍ର ଲେଲେବେଲେ ଜଣାଇଲେ
ଆପଣାର ମନ,
ଆଉ ଯେତେ ଥିଲେ ତହିଁ ଏକସ୍ୱରେ
କଲେ ସମର୍ଥନ ।

"ଗନ୍ଧମାଦନ ତ ଥିଲା ଗନ୍ଧଗିରି,
ପରିମଳ ଗିରି,
ନାଗାର୍ଜୁନ ରହିଥିଲେ ଅଧିବାସ
ଶିଷ୍ୟ ସହ ମିଳି ।

ଧାତକର୍ତ୍ତି ରହିଥିଲେ ପଞ୍ଚଶତ
ଶ୍ରମଣ-ବିହାରଂ
ମୁଖରିତ ହେଉଥିଲା ବୁଦ୍ଧ-ବାଣୀ
ଶାନ୍ତିର ଆଧାର ।

ଆର୍ଯ୍ୟଦେବ ତାହାପରେ ନେଇଥିଲେ
ବିହାର-ଦାୟିତ୍ୱ
ମନ ପ୍ରାଣ ଦେଇ କାର୍ଯ୍ୟ କରୁଥିଲେ
ତାହାର ସ୍ଥାୟିତ୍ୱ ।
ସ୍ମରଣ ପାଞ୍ଚଶ ବର୍ଷେ ତାହା ଏବେ
କାଳର କବଳେ
ଧ୍ୱସ୍ତ ହୋଇ ଯାଇଅଛି, ଚିହ୍ନ ତାର
ନାହିଁ ଧରାତଳେ ।"

"ସେ ସବୁର ଧ୍ୱଂସ ହେବା ପ୍ରସ୍ତାବକ,
ହୋଇଆଛି ଧ୍ୱସ୍ତ,
ସେ ଦିନର ଧର୍ମଧାରା ଚକ୍ରବାଳେ
ହୋଇଅଛି ଅସ୍ତ ।
ବିଷ୍ଣୁଙ୍କର ଭକ୍ତ ହୋଇ ଗ୍ରାମୁଁ ଏବେ
କରୁଛନ୍ତି କବା ?
ସମ୍ଭବ ନୁହଇ କେବେ ସେ ଧର୍ମର
ପ୍ରଶଂସା କରିବା ।"

"ବିଷ୍ଣୁ-ଅବତାର ମଧ୍ୟେ ବୁଦ୍ଧ ପରା
ନବମାବତାର,
ଶଙ୍କର ଧର୍ମର ଧାରା ପ୍ରଶଂସିବା
କିବା ଅବସର ?"

"ନବମାବତାର ସତ୍ୟ ମାତ୍ର ତାଙ୍କ
ଧର୍ମର ଉଦ୍ଦେଶ୍ୟ
ବେଦବିଧାନର ନିନ୍ଦା, ଯଜ୍ଞ ନିନ୍ଦା
ତାହିଁତ୍ ବିଶେଷ ।
ବ୍ରାହ୍ମଣ କୁଳର ତାହା ଅପମାନ,
କେହ୍ଲେ ବରଣୀୟ,
ତାଙ୍କର ବଉଦ୍ଧ ଧର୍ମ କେଉଁପରି
ହେବ ଅମ ପ୍ରିୟ ?"

"କୋଶଳର ମହାରାଜା ହର୍ଷଗୁପ୍ତ
ବଲ୍ଲୀଦୁର୍ଗ-ରଣେ
ପ୍ରାଣ ହରାଇଲେ ଯେବେ, ପୁତ୍ର ବାଳାର୍ଜୁନ ତେବେ
କୈଶୋର ଜୀବନେ ।
ପୁତ୍ର ପାଇଁ ପତିରାଜ୍ୟ ପାଳୁଥିଲେ
ମହିଷୀ ଵାସଟା
ସେଇଠି ମନ୍ଦିର ରଚି ସ୍ଥାପିଥିଲେ
ନୃସିଂହ ଦେବତା ।
କାଳବଳେ ସେ ଦେଉଳ ଏକାବେଳେ
ହୋଇଅଛି ଲୀନ,
ଅସ୍ତ ଶଇଳର ମୂଳେ ଅସ୍ତଗତ
ହୋଇଚ ସେ ଦିନ

ସେଇ ସ୍ଥାନେ ପୁଣି ସେଇ ନୃସିଂହଙ୍କ
ଦେଉଳ ଉଚ୍ଚତ
ନୃସିଂହ ଦେବତାଙ୍କର ଦିବ୍ୟ ଜ୍ୟୋତି
ମହିମା ଅର୍ଚ୍ଚିତ ।"

ରଘୁ ଯୋଷୀ ଜଣାଇଲେ—
"ସାଧୁ, ସାଧୁ,
ତୁମ୍ଭଙ୍କର ସ୍ତବ,
ନୃସିଂହ ଦେଉଳ ତହିଁ
ଗଢ଼ାଇବା
ଧର୍ମସାନ୍ନ୍ୟ ଲଭ ।

କୃତ ତାହା ହେବ ନାହିଁ,
ହେବ ସିନା
ଏକ ଅନୁକୃତ,
ମହର୍ଷୀ ବାସଷ୍ଠାଙ୍କର
ହେବ ତାହା
ସ୍ମୃତ, ମହାସ୍ମୃତ ।"

"ଶ୍ରୀପୁରର ମହାରାଣୀ ଥିଲେ ଏକ
ଯଶସ୍ୱିନୀ ନାରୀ
ଆମର ଗୌରବ କ'ଣ କ୍ଷୁଣ୍ଣ ହେବ
ହେଲେ ଅନୁକାରୀ ?
କଥଣ କରିବା ତେବେ ବନ୍ଧୁବର୍ଗ
ପରାମର୍ଶ ଦିଅ,
ବରଣୀୟ ହେବ ତାହା, ତାହା ପୁଣି
ହେବ କରଣୀୟ ।"

ବାମ ବ୍ରହ୍ମା ଉଚ୍ଚାରଲେ—"ଅଭିନବ
ହେବ ସେ କଳ୍ପନା,
ନୃସିଂହ ଦେବତା'ପରେ ହେବ ତାହା
ଅପୂର୍ବ ଯୋଜନା ।
ବହୁଙ୍କ ମୂର୍ତ୍ତିକ ପ୍ରାସ୍ତେ ଲୁଚିଅଛୁ
ଶବର ଭିତରେ,
ନୃସିଂହ ଦେବତା ତାରେ ଡାକିଥିବେ
ଶବର ମୂଟରେ ।
ମହାରାଣୀ ବାସଷ୍ଟାଙ୍କ ମୂର୍ତ୍ତିପରେ
ଆହେ ନୃପବର,
ଆମର ନୃସିଂହ-ଧର୍ମ ଚମତ୍କାର,
ଅଭିନବତର ।"
ସମବେତ ଦ୍ୱିଜବୃନ୍ଦ ସମସ୍ୱରେ
କଲେ ଉଚ୍ଚାରଣ,
"ବ୍ରହ୍ମା ଯାହା କହୁଚନ୍ତି, ଯଥାର୍ଥ ଏ,
ଯଥାର୍ଥ ବଚନ ।"

ଅଳପ ସମୟ ପାଇଁ ରୁଷ୍ଟୀଶବ
ବନ୍ଧୁ ନରପତି,
ହୃଦ ଶବ ପ୍ରକାଶିଲେ ସତେ ସେହ୍ନେ
ସ୍ୱଚ୍ଛ ନୁହେ ଅତି ।

“ଆମ୍ଭେ ଖଣ୍ଡ ସ୍ୱପ୍ନକୁଳ, ରହୁ ତେବେ
ତୁମର କଳ୍ପନା,
ସାର୍ଥକ, ସାର୍ଥକ ହେଉ ମୋହର ଏ
ବ୍ୟାକୁଳ ବାସନା ।”

ଗଳ୍ପବେଳେ ମଧୁଗୁରୁ କହୁଥିଲେ—
“ଜାତିର ଉଦ୍ଦେଶେ
ଯୁଦ୍ଧ ବାଢ଼ୁଥିଲେ ରାଜା ମାନେ ମାନେ
ମାନିଗଲେ ଶେଷେ ।
ବର୍ଣ୍ଣ ଧର୍ମ ସମାଜରେ ଯେଉଁ ଜାତି
ଜାତିର ରାଜନ,
କିଏ ସେ ବଜସ୍ୱୀ ଏବେ, ଜାଣିଲ ତ
ରାଜା ନା ବ୍ରାହ୍ମଣ ?”

# ପୀତବାସ ଷଡ଼ଙ୍ଗୀ

ଷଡ଼ଙ୍ଗୀ ବୈଦ୍ୟଙ୍କୁ ଦେଖି
ନରେନ୍ଦ୍ର ଅଭୟ ସିଂହ
ଝାଡ଼ଖଣ୍ଡ ପତି
ହୃଦୟର ଉଲ୍ଲାସରେ
ଜଣାଇଲେ ସାଦର ସ୍ୱାଗତ ।

କଏ ଦ୍ୱିଜ ଊର୍ଦ୍ଧ୍ୱେ ତୋଳି ପାଣି
ହୃଦୟର ଉଚ୍ଛ୍ୱାସରେ
ଉଚାରିଲେ ଆଶୀର୍ବାଦ ବାଣୀ ।

ମହାରାଜ ଜଣାଇଲେ
ଉତ୍ଫୁଲ୍ଲ ଅନ୍ତରେ
"ବୈଦ୍ୟରାଜ" ଶ୍ରଦ୍ଧା ସମାଦରେ,
"ଚିରଦିନ ମୋହପ୍ରତି
ଆଶୀର୍ବାଦ ରହିଅଛି ତବ
ତବ ଯୋଗେ ଆଜ ମୁହିଁ
ଭୁଞ୍ଜୁଅଛି ସୌଭାଗ୍ୟ ବିଭବ ।

ଦୁର୍ଭାଗ୍ୟ ଭୋଗେ ମୁଁ ଯେ
　　ପଡ଼ିଥିଲି
ଛାଡ଼ିଥିଲି ଆରୋଗ୍ୟର ଆଶା,
ଯାହା ଯାହା କରିଅଛ
　　କହିବାକୁ ନାହିଁ ମୋର ଭାଷା ।

କେତେ ଯତ୍ନେ ନିରାମୟ
　　କରିଅଛ ମତେ,
ମୋର ଏଇ ଜୀବନରେ
ମୁହିଁ ଏବେ ଭୁଲିବି କେମନ୍ତେ ?”

“ମୋହ ଯୋଗେ ନୁହେଁ ଛାମୁ,
　　ଜଗନ୍ନାଥ ପ୍ରଭୁଙ୍କର ଯୋଗେ
ଛାମୁ ଆଜ ରହିଚନ୍ତି
　　ନଷ୍ଟି ନେ, ନୀରୋଗେ ।”

“ସାରା ବ୍ରହ୍ମାଣ୍ଡର ଏକା
　　ଜଗନ୍ନାଥ ପ୍ରଭୁ,
ସାରା ଏଇ ଜଗତରେ
　　ଯେତେ ଯାହା କରୁଛନ୍ତି ସବୁ ।

ତଥାପି ଯାହା'ର ହସ୍ତେ
　　ଦେଉଛନ୍ତି ଯେବେ ଯେଉଁ ସିଦ୍ଧି ;
ତାହାକୁ ମର୍ଯ୍ୟାଦା ଦେବା
　　ସଚେତନ ଜଗତର ବିଧି ।”

"ସ୍ୱମୂଙ୍କର ଧାର୍ମିକତା
ସ୍ୱମୂଙ୍କର ଏଇ ଉଦାରତା,
ଆମର ପରିଏ ନୁହେଁ
ସାଧାରଣ ହୃଦୟର କଥା ।

ଆଜି ମୋର କୁଟୀରକୁ
ଯାଇଥିଲା ସ୍ୱମୂଙ୍କ ଡଗର
ଥରଥର ହୋଇ ଏଇ
ଆସୁଅଛୁ
ଜାଣେ ନାହିଁ କାହିଁକି ସେ
ସ୍ୱମୂଙ୍କ ଡାକରା ।"

"ତବ ସ୍ନେହେ ବୈଦ୍ୟରାଜ,
ରୋଗମୁକ୍ତ ହୋଇଅଛୁ,
ତବ ପାଶେ ଋଣଗ୍ରସ୍ତ ମୁହିଁ,
ଡ଼କାଇଚ ସେଇଥିରୁ କଥଞ୍ଚିତ
ମୁକ୍ତ ହେବାକୁ ହିଁ ।

ବୃଦ୍ଧ ବୟସରେ ତବ
ଭରଣ-ପୋଷଣ ଲାଗି
ଦେଉଅଛୁ ଖରଦୋଲ ଗ୍ରାମ
ତମ୍ବା ପଟା ଲେଖିଦେଇ
ଟେକି ଦେଉଅଛୁ ଏବେ ତାହାର ଇନାମ ।"

"ଏତେ ବଡ଼ ଦାନ ଏଥେ
ତୁମ୍ଭଙ୍କର ଏତେ ବଡ଼ ଦାନ ।
ମୋହର କଅଣ ହେବ ?
ପ୍ରୟୋଜନ ମୋହର ସାମାନ୍ୟ ।

କ୍ଷୁଦ୍ର ମୋର ପରିବାର,
ନାହିଁ ମୋର ବହୁତ ଜଞ୍ଜାଳ;
ତୁମ୍ଭଙ୍କର ଦୟା ଯୋଗେ
ରୋଗଗ୍ରସ୍ତ ଲୋକଙ୍କର ଦେହପାଖ ଦେଖି
ସୁଖେ ଦୁଃଖେ
କାଟୁଅଛୁ କାଳ ।

ସେଠକରେ ପାଉଅଛୁ କେତେ ଆନନ୍ଦ
ପୁଣି କେତେ ଆରାମ
ମୋହର କଅଣ ହେବ
ଏତେ ବଡ଼ ରାଜଦାନ
"ଫରଦୋଲ ଗ୍ରାମ ?"

"ସଫଳ ଡାକ୍ତରୀ ପାଇଁ
ଡାକ୍ତରର ସେବା ପାଇଁ
ଏହା ତବ ଯୋଗ୍ୟ ପୁରସ୍କାର
ଆନନ୍ଦରେ ଘେନ ଏହା
ସୁଖରେ ରୁହନ୍ତୁ ଏବେ
ତବ ପରିବାର ।"

ନରେଶ୍ୱର ଆଦେଶରେ
ଶଙ୍ଖ, ଭେରୀ, ତୁରୀ ବାଦ୍ୟ
ଉଚ କୋଳାହଳେ
ତମ୍ବାପଟା ମହାରାଜ ଟେକିଦେଲେ
ଗାଁଉବାସ ସଡ଼ଙ୍ଗୀଙ୍କ କରେ ।

ଗୃହେ ପାଦ ଦେଇ ଦେଇ
ପଚାରିଲେ ବ୍ରାହ୍ମଣ ଘରଣୀ—
"ପାଟପଥା ଆଜ ପର ଦେଇଛନ୍ତି
ସାରଙ୍ଗଧର ରାଜ୍ୟ ନୃପମଣି ।"

"ଏତେକ ଏତେକ ନୁହେଁ ଅନ୍ତର ଦହୁଛି
ବୋଝବାର ଶକ୍ତି ନାହିଁ
ବୋଝ ଆଣି ପାରିଲିନ ମୁଁ ତ ।"

"କଅଣ କଅଣ ତହୁଁ ପୁଚ୍ଛିଲେ ବ୍ରାହ୍ମଣୀ
କଣ୍ଠେ ବ୍ୟାକୁଳତା,
"ଭରଣ-ପୋଷଣ ପାଇଁ ଦେଇଥିଲେ
ଖରଦୋଲ ଗ୍ରାମ
ଦେଇଥିଲେ ତାର ତମ୍ବାପଟା ।"

"କୁଆଡ଼େ ରହିଲା ତାହା ?"
ପ୍ରଶ୍ନ ଶୁଣି
ଗୃହର କରତା
ଜଣାଇଲେ ହୃଦସ୍ଥର କଥା ।

"ଫେରି ଆସୁ ଆସୁ ମୁହିଁ
ଜଗନ୍ନାଥ ପ୍ରଭୁଙ୍କର ଦେଉଳେ ପଶିଲି,
ଚମ୍ପାପଟା ଥୋଇ ଦେଇ ପ୍ରଭୁଙ୍କର ପାଦେ
ନେତ୍ର ବୁଜି ଧ୍ୟାନେ ବସିଲି ।

ହୃଦୟରେ ଖେଳିଗଲା
ସରଗର କଅଣ ସେ ଭାବ,
ଜୀବନରେ ସେଇ ମୋର ମନେ କଲି
ସୁଦୁର୍ଲ୍ଲଭ ଲାଭ ।

ତବ ଦୟାବଳେ ପ୍ରଭୁ ଚଳୁଅଛୁ
ମୋହର ସଂସାର,
କି ହେବ ମୋହର ଆଉ ଆଜି ଭଲା
ଏତିକି ଜଞ୍ଜାଳ ?

ସତେ କିବା ଦୁନିଆରେ
ଆଉ କେଉଁ ସୁଖରେ ରହିବ ?
ରୋଗାକ୍ରାନ୍ତ ଲୋକଙ୍କର ଦେହପାଆ
ଦେଖିବାକୁ ଆଶାୟୀ ହୋଇବ ?

ତୁମର ସକାଶେ ପ୍ରଭୁ ରଖିଗଲି
ଏଇ ଚମ୍ପାପଟା,
ନିଅ ଏବେ ନିଅ ତୁମେ ମୋର ଅର୍ଘ୍ୟ
ହେ ମୋର ଦେବତା ।

ଛଳ ଛଳ ନୟନରେ ଝୁରୁଁ ଝୁରୁଁ
ତରବର ହୋଇ ସଁପି ଦେଲି
ଜନ୍ମାନ୍ତରେ ସୁଚିତ୍ତରେ ତୁମ ପାଶେ
ଆସୁଅଛୁ ଫେରି ।"

"ଖାଇ ଯଥା
ଆଣିଅଛ ତୁମ ଜନ ପାଇଁ ?
ତେଭ ଅଧ ପାଉଲ କ
ଭାତ୍ର ନେଇ ଠାକୁରଙ୍କ ପାଇଁ ?"

"ହୁଁ ହୁଁ ବୁଝିଗଲ,
ଏଇକ୍ଷଣି
ଫେରାଇ ଦେବ ।"
"ମୋତେ ଦେଉନାହିଁ ଭାଗ
ମୁଁ ତା ଦେଇ
ଯେବେ ହେଲେ ପୁଣ୍ୟବନ୍ତ ହେବ ।"

"ମୁଁ ତ ବୁଝି ଗାଉଥିଲ
ତେତାଇ ଦେଲ ତ ତୁମେ
ତୁମର ତ ଦେବା ଅଧିକାର !
ତୁମେ ସଜ ହ୍ୱୋଇପଡ଼
ଦେଖିଲବୁ ଫେରନ୍ଦିବା ସ୍ଥଳ ।"



# ଭାଇ ଭାଇ

ଆଜର ଏଇ ଯେ ସମ୍ବଲପୁର
ଦୂର ଅତୀତର ବୁକେ
ପାଟନାର ଏକ ଅଞ୍ଚଳ ଥିଲା,
କଥା ଅଛୁ ଲୋକ-ମୁଖେ
ପାଟନାର ରାଜା ଅନୁଜର ଦେଖି
ଅନୁପମ ଅବଦାନ,
ଅନାବିଲ ମନେ ତୋଳି ଦେଇଥିଲେ
ସ୍ନେହର ସ୍ୱପ୍ନିଲ ଦାନ ।

ତାହାରେ ସେ ଦିନ ଘେର ବନ୍ଧୁଜନ
କୃଷ୍ଣ ଭୂମିର ଝରି,
ବର୍ଷାଋତୁର ଘନ-ସନ୍ଧ୍ୟାରେ
ଭରି ଉଠୁଥିଲା ତରୀ ।

ରାଜଅବରୋଧେ ନୃସିଂହ ଦେବ .
ପାଟନାର ଅଧିପତି
ସ୍ୱରକେ ଡକାଇ କହିଲେ ବଚନ
ବ୍ୟକଳ ବଧୂର ଅତି ।

"ପ୍ରଭାତରୁ ଆଜ ପ୍ରସବବ୍ୟଥାରେ
ଅଛନ୍ତି କାତର ରାଣୀ,
କ କରିବା ମୁଁ ତ ସ୍ଥିର ପାରୁ ନାହିଁ,
କ କରିବା ରାମ ଦାମୀ ?
ବହୁତ ଧାଈ ଲଗିଲେ କ ହେବ
ହେଉ ନାହିଁ କଛି ଫଳ,
ବେଳୁଁ ବେଳ ଖାଲି ଗର୍ଭ-ବେଦନା
ହେଉଛି ପ୍ରବଳତର ।"

ରାମ ଦାମୀ ତହୁଁ ବିନମ୍ର-ବଚନେ
ନିବେଦିଲେ, "ମହାରାଜ,
ଚବେ ମୋହର ଚନ୍ତ୍ର ପାରୁନ
କ ହୋଇ ପାରିବ ଆଜ ?
ନଦୀ ଅରପାରି ଗ୍ରାମେ ରହିଅଛୁ
ନପୁଣିକା ଏକ ଧାଈ
ତା ହାତ ଲଗିଲେ ସବୁ ଦୁଃଖ ଯିବ,
ବାଜବ ଶୁଭ ଶାନ୍ତ ।

ମାଝ ଏକଟେଶ ବରଷା ଲଗିଛି
ଝିପି ଝିପି ଝର ଝର,
ବନ୍ୟାର ବେଗେ ଉଦ୍‌ବେଳ ହୋଇ
ବଢ଼ୁଅଛୁ ନଦୀଜଳ ।
ଆଜ ଘନ-ଘୋର ଅନ୍ଧାରେ, ପ୍ରଭୂ
ପନ୍ଥା ତ ଦଶୁନାହିଁ,
କେଉଁ ପଥ ଅବା ଧାଡ଼ୀ ଆସିବ ?
ରାତ୍ରୀ ପାହିଲେ ଯାଇ···।"

" କି ଘଟିବ ଏଇ ରାତ୍ରୀ ଭିତରେ
କି ଘଟିବ କିଏ ଜାଣେ ?"
ନୃପତି କହିଲେ ଆତୁର କାତର
ଆତୁର ବଧୂର ପ୍ରାଣେ ।
ସମବ୍ୟଥା ଦେଇ ଜଣାଇଲେ ଦାସୀ,
"ଆଉ କିଛୁ ନାହିଁ ରାହା,
ଏ ବିପଦେ ମାଆ ପାଟନେଶ୍ୱରୀ
ନିଶ୍ଚୟ ହେବେ ସାହା ।"

ସବୁ କଥା ଶୁଣି କେଶବ ମଲିକ
ଜଣାଇଲା, "ମହାପ୍ରଭୁ,
ନିର୍ବୋଧ ମୂର୍ଖ ସଂକଟ ତବ
ବୁଝି ପାରୁଅଛୁ ସବୁ ।

ସକଳ ଶ୍ୱପଦେ ପ୍ରସ୍ତୁତ ଅଛୁ
ରିପୁ ପଶିବାକୁ ଯୁଦ୍ଧ;
ମଣିମା ଶୁଦ୍ଧିଲେ ପଡ଼ିବ ଭିଡରେ
ଏ ଜୀବନ ଦେବୁ ଟାଳି ।

ମାୟାବତୀ ନଦୀ-ବକ୍ଷ ମୋହର
ଜୀବନର ଖେଳଘର,
ଭାବୁ ନାହିଁ ମୁହିଁ ଘନ-ଘୋର ନିଶି
ବନ୍ୟା-ବ୍ୟାକୁଳ ଜଳ ।
ଭୟ ନାହିଁ ମୋର ଲଙ୍ଘି ଯିବ ମୁଁ
ଭୟ ନାହିଁ ମୋର ମନେ,
ମାଆ କୃପାର ଦୁର୍ଗମ ଜଳେ
ଆଣିବ ମୁଁ ଆଜ୍ଞ କଣେ ?”

ଗମ୍ଭୀରେ ତହୁଁ ଉଠିଗଲେ ରାଜା
ମର୍ମ ବେଦନା ଘୋର—
“ଏ ଶ୍ୱପଦେ ମାଆ ପାଟନେଶ୍ୱରୀ
ତୁ ଏକା ଭରସା ମୋର ।”

ତରୁଣ ଯୁବକ ବଳରାମ ଦେବ
ପାଟନାର ପଟାୟତ,
ଦୂରେ ଦୂରେ ରହି ନୀରବେ ମଉନେ
ଦେଖୁଥିଲେ ଏ ଘାବତ ।

ଅନ୍ଧ ତାମସେ ଚଞ୍ଚଳ ଯାଇ
ମାସ୍ତାବତୀ ନଦୀ-ତୀରେ
ବିପୁଳ ସାହସେ ଶରୀର ମେଲିଲେ
ବନ୍ୟାବ୍ୟାକୁଳ ନୀରେ ।
ସ୍ୱର୍ଗ-ଆଶିଷ ସଦୃଶ ତେବେ
ଚଳ ବିଦ୍ୟୁତଲେଖା
ଘନ ଘନ ସ୍ଫୁରି ଦୁର୍ଗମ ଜଳେ
ଦେଖାଇଲା ପଥରେଖା ।

ନଦୀ ଆରପାର ଗ୍ରାମେ ଯାଇ ବୀର
ଧାଙ୍ଗୀରେ ଖୋଜି ବେଗେ
ଦୁଃସହ ସେଇ ଦୁର୍ଘଟ କଥା
ଜଣାଇଲେ ଉଦ୍‌ବେଗେ ।

ଧାଙ୍ଗୀ ବୋଇଲା, "ବନ୍ୟାଜଳରେ
ଯିବ ମୁହିଁ କେଉଁପରି ?
ବୀର ପଶ୍ଚାତ୍ସୃତ କହିଲେ, "ମୁଁ ଜାଣେ
ତୁମେ ଯିବ କେଉଁ ଭଳି ।"

ଧାଙ୍ଗୀରେ ବୀର ପୃଷ୍ଠେ ବସାଇ
ପ୍ଲାବିତ ନଦୀର ଜଳେ,
ଦନ୍ତ୍ରର ମହା-ଧୈର୍ଯ୍ୟ-ସାହସେ
ଲଙ୍ଘିଲେ ଖରତରେ ।

ରଜନୀର ସେଇ ତୃତୀୟ ପ୍ରହରେ
ନୂତନା ଧାତ୍ରୀ ରୂପେ
ପ୍ରିୟ ପରିଜନେ ବିସ୍ମିତ କରି
ମିଳିଲେ ଅନ୍ତଃପୁରେ ।

ଧାତ୍ରୀର ବକ୍ଷୁ ଚଞ୍ଚଳ ହେବନେ
ସ୍ମୃତି ଲଭିଲେ ରାଣୀ,
ଦୁର୍ବିସହ ସେ ଗର୍ଭର ଶୂଳ
ଆଉ ନ ପାଲେ ଜାଣି ।
ରଜନୀର ସେଇ ଅନ୍ତିମ ଯାମେ
ନବୀନ ସୂର୍ଯ୍ୟ ସମ
ପ୍ରସବିଲେ ନବ ନନ୍ଦନ ଏକ
ସୁନ୍ଦର ମନୋରମ ।

ରାଜ ଅବରୋଧେ ଉଚ୍ଛୁଳି ପଡ଼ିଲା
ଉଲ୍ଲାସ-କଲରବ
ଅନ୍ତରେ ରାଜା ଅନୁଭବ କଲେ
ସ୍ୱର୍ଗୀୟ ବଇଭବ ।
ବାହୁରେ ଶିଶୁଙ୍କ ବନ୍ଧନ କରି
କହିଲେ, "ଶିଶୁ ତୁ ଧନ୍ୟ,
ସଂସାରେ କିଏ ଏପରି କରିବ
ଶିଶୁ ବିନା ଆଉ ଅନ୍ୟ ?"

ଅଗ୍ରତେ ମୋର ସ୍ୱର୍ଗ କରି ନେଲୁ
ଏ ମୋର ଆପଦସ୍ୱର,
ଏକା ମୁଁ କପରି ଭୁଞ୍ଜିବି ମୋର
ସମ୍ପଦ-ଅଧିକାର ?
ମରମତଳର ବାଞ୍ଛା ଏ ମୋର
ଏହାହିଁ କରିଚ ଧାର୍ଯ୍ୟ
ସ୍ୱର୍ଗ କରି ଆମେ ଭୁଞ୍ଜିବା ଜାଣି
ମୋର ଏ ପାଟନା ରାଜ୍ୟ ।"

"ଆଜ୍ଞାବନ୍ଧ ମୁଁ" ଅନୁଜ କହଇ
"ରାଜ୍ୟ ମୋର କି ହେବ ?
ପାଶେ ପାଶେ ରହୁ ସେବାର ସୁଯୋଗ
ଦିଅ ମୋତେ ଦିଅ ଦେବ ।"

"ଆଜ୍ଞା ବନ୍ଧୁ ତୁ" ନୃପତି ଭାଷିଲେ
"ଆଜ୍ଞା ଏ ମୋର ଆଜ,
ଅଙ୍ଗ ନଦୀର ସେପାର ରାଜ୍ୟେ
ହୁଅ ତୁମେ ନରରାଜ ।"



# ସତୀ ଆଜି
## 'ମଙ୍ଗୁଲୁ'ର 'ଗାଈ'......

ଗାଙ୍ଗପୁର ମୁଲକର
      କ୍ଷୁଦ୍ର ଏକ ବନ-ନଦୀକୂଳ
ଚିତାଗ୍ନି ସଜାଡ଼ୁଛନ୍ତି
      ତହିଁ କେତେ ଲୋକ ହୋଇ ଠୁଳ ।

ନିକଟରେ ମୃତଦେହ
      ରହିଅଛି କୋକେଇ ଭିତରେ,
ତାକୁ ଘେରି କେତେ ଜଣ
      ବସିଛନ୍ତି ବ୍ୟଥିତ ଅନ୍ତରେ ।

ହଠାତ୍ ମଳିନଦେହା
      ନାରୀ ଏକ ମିଳି ଯାଇ ତହିଁ
କାନ୍ଦିଲା ଅସରା ଲୁହେ
      ମୃତଦେହ ପାଖେ ବସି ରହି ।

ବସିଥିଲେ ଯିଏ ସେଠି
      ପଚାରିଲେ—"କିଏ ତୁ ପାଗଳୀ,
ଏଠି ଆସି କାନ୍ଦୁ କିଆଁ ?
      ଚାଲି ଯାଆ ନିଜ ରାସ୍ତା ଧରି ।

"ମୁଁ କୁଆଡ଼େ ଚାଲିଯିବ ?
ଏଇ ମୋର ପ୍ରାଣନାଥ ଗଲେ,
ପାଗଳୀ ନୁହେ ମୁଁ ସଇ,
ମୁଇଁ ଯିବ ତାହାଙ୍କ ସଙ୍ଗରେ ।"

"କି କଥା କହୁଚ, ଆଲୋ
ତା ସ୍ତ୍ରୀର ତ ବୁଜିଦେଲା ଆଖି,
ଦଶ ବାର ବର୍ଷ ତଳେ
ତାଆଁ ବାହା ଆମେ ଅଛୁ ସାକ୍ଷୀ ।

ଅହୁଅ ଢେଙ୍ଗୁରା ପିଟି
ଏଇଠିକି ଆଣିଥିଲୁ ତାରେ,
ଏଇଠାରେ ମାଟି ଦେଲୁ,
ମାଟି ଦେଲୁ ତାକୁ ଏଇଠାରେ ।

ଦଶ ପୁଅ, ଦୁଇ ଝିଅ
ସଂସାରକୁ ଯାଇଛି ସେ ଛାଡ଼ି,
ପିତା ଚାଲିଗଲେ ବୋଲି
କାନ୍ଦୁଛନ୍ତି ଅଶ୍ରୁବାରି ଢାଳି ।

ତୁ କଏ ଲୋ, ତୁ କଏ ଲୋ
ତୁ କପର ମଙ୍ଗୁଳୁର ସ୍ତ୍ରୀର,
ମଶାଣି ଘାଟରେ ଆସି
ଶେଷରେ ତୁ ଯାଇଅଛୁ ମିଳି !"

"ତୁମେମାନେ ଜାଣିନାହଁ
ବର୍ତ୍ତମାନ କହୁଅଛୁ ଖୋଲି,
ତୁମେମାନେ ବୁଝ ନାହଁ
ପରକୁ କେ କହେ ସ୍ୱାମୀ ବୋଲି ?"

କିଏ ଜଣେ ବୃଦ୍ଧ ଲୋକ
ଦେଖୁ ଦେଖୁ ଆସିଲେ ତ ଧାଇଁ,
"ନଜର ପଡ଼ିଲା ମୋର
ତୁ କେମିତ ଆସିଲୁ ରେ ଗାଈ ?"

"ମଉସା ମଉସା ମୋର,
ତୁମ ପାଦେ ଓଲଗି ହେଉଚି,
ମୁହିଁ କିଏ କହୁଦିଅ,
ଏମାନେ ତ ଜାଣନ୍ତିନି କିଛି ।"

"ଗାଈ ଇଏ, ମଙ୍ଗୁଳି ତ
ସ୍ୱାକୁ ଆଗ ହୋଇଥିଲା ବଳି,
ଏଇ ଅଲଗୀର କଥା
ତୁମ ଆଗେ କହିବି ରେ କିବା ?
ତିନି ଚାରି ବର୍ଷ ରହି,
ଗାଆଁ ଛିଣ ପୀରତରେ ପଡ଼ି,
ଅପଣାର ସଂସାରରୁ
ଏ ଗାଈକି ଦେଇଥିଲା ତଡ଼ି ।

ଏତେ ଦିନେ କେଣେ ଥିଲୁ
ଥିଲୁ କାଲେ ତୋର ବାପ ଘରେ ?
କାଲ ତୋର କାଟୁଥିଲୁ
କେଉଁପରି ଦୁଃଖ ଦୁର୍ଯୋଗରେ ?"

"ଦୁଃଖିଲ ମୋ ବାପ-ମାଆ
କେତେଦିନ ରହିଲେ ସେଇଠି,
ଭିକ୍ଷା କରି ବଞ୍ଚିଲି ମୁଁ
ଜୀବନର ଗ୍ରହା ଗଲା ଫିଟି ।

ବାପ ଗଲେ, ମାଆ ଗଲା
ମୋର ଭାଇ ସ୍ୱଜନ ମେଳରେ
ରହି ପାରିଲିନି ଆଉ
ସହି ସହି ଦୁଃଖର ବେଳରେ ।

ବାହାରିଲି ଘର ଛାଡ଼ି
ବଞ୍ଚିଲି ମୁଁ ଭିକ୍ଷା ବୃତ୍ତି ଧରି
ନଷ୍ଟ କଲି ଜୀବନ ମୋର
ଜୀବନର ଭେଳା ବାହି କରି ।
ଆଜ ମୁଁ ଶୁଣିଲି ପିଏ
ଜୀବନର ପ୍ରାଣନାଥ ମୋର,
ଆଖି ବୁଜିଦେଲେ ହାଇ
କାଟି ଦେଇ ଜୀବନର ଡୋର ।"

"ଶେଷ ଦରଶନ ପାଇଁ
ଆସିଚ୍‌ କି ଆସିଚ୍‌ କି ଗୃହ ?"
ଉତ୍ତର ମିଳିଲା ତେବେ—
"ସେଥିପାଇଁ ମୁଁ ତ ଆସି ନାହିଁ ।
ମୁଁ ତାଙ୍କର ଆଦ୍ୟ ନାରୀ,
ସତୀ ଯିବ ତାହାଙ୍କ ସହିତ,
ମିଶିବ ତାଙ୍କର ଦେହେ
ଜୀବନରେ ସୁଯୋଗ ଏଇ ତ ।"

"କଅଣ କହୁଚ୍‌ ଗୃହ
ସତୀ ଯିବୁ ମଙ୍ଗୁଳି-ଚିତାରେ ।
ଏତେ ଦିନ ରହୁଥିଲୁ,
ବଞ୍ଚୁଥିଲୁ ମଙ୍ଗୁଳି-ଚନ୍ଦ୍ରାରେ ?

"ତାଙ୍କର ମୁଁ ଆଦ୍ୟ ନାରୀ
ଶେଷେ ପୁଣି ହେବି ଶେଷ ନାରୀ,
ଏକ ହୋଇ ମିଶିଯିବି
ଚିତାଗ୍ନିରେ ଏଇ ଦେହ ଜାଳି ।

ସେ ଆଜି ଛାଡ଼ିଲେ ଘର
ଆଗୁଁ ଘର ଛାଡ଼ିଥିଲି ମୁହିଁ,
ଦୁହେଁ ଆଜି ମିଶିଯିବୁ
ଖୋଲା ଘର, ଖୋଲା ମାଟି ଭୂଇଁ ।'

ମହୁସା ପୁଚ୍ଛିଲେ ପୁଣି—
　　"ସୁଭ ଭୂତ ସଙ୍ଗ ଯିବୁ ଯବ୍ବ !
ଆମର ଗାଆଁର ଲୋକେ
　　ତୋର ମନ ବୁଝିବେ ଲୋ ଭଲ !

ମଙ୍ଗୁଳୁ ହୋଇବ ବଡ଼,
　　ବଡ଼ ହେବ ପୁଣି ତୋର ନାମ
ଆମର ଏ ଗ୍ରାମ ହେବ
　　ପୁଣ୍ୟ ତୀର୍ଥ, ପୁଣ୍ୟମୟ ଧାମ ।

ଭୂହ ସଂଖ୍ୟା ଆଣିଅଛୁ,
　　ଆମର ତ ଅଛୁ ଜଣବାର,
ନୂତନ ଓଢ଼ଣୀ ଶାଢ଼ୀ
　　ହଳଦ୍ଦ ତେଲ ଅଳତା ସିନ୍ଦୂର ।

ଖବର ଦେଉଛ ତେବେ
　　ଆମ ଗାଁର ମରଦ ମାଇଝି
ଆସନ୍ତୁ ଆସନ୍ତୁ ଖେଦ
　　ଦେଖିବେ ଲୋ ଅପୂର୍ବ ଏଇଠି ।"

ଘଡ଼ିଏ ଦଘଡ଼ି ମଧ୍ୟେ
　　ନର-ନାରୀ ହୋଇଗଲେ ଠୁଳ,
ହରିବୋଲ, ହୁଳହୁଳି
　　ଶବଦରେ ପୂରିଗଲା କୂଳ ।

ସଭକ ମାଇଝି ମାନେ
ନଦୀ ଜଳେ ସ୍ନାହାନ କରାଇ
ନୂଆ ଶାଢ଼ୀ ପିନ୍ଧାଇଲେ
ସିନ୍ଦୂର ଅଳତା ଦେଲେ ନାଇ ।

ବନ ଫୁଲ ପଲ୍ଲବରେ
ମଣ୍ଡି ଦେଲେ କେଶ ବାସ ତାର,
ନୂଆ ବୋହୂ ପରି ପୁଣି
ଦେଖାଗଲା କେମନ୍ତ ବାହାର ।
କାଲିର ସେ ସଭ ଆଜ
ସାକ୍ଷାତ୍ ଦେବୀ ହୋଇଅଛୁ ସତେ,
ମୂହୂର୍ତ୍ତିର ଅବଦାନେ
ନବା ସୃଷ୍ଟି ହୁଏ ଏ ଜଗତେ !
ଦମ୍ପତରେ ମାଲ ଝାଇ
ଶୁଆଇଲେ ସଜ୍ଜିତ ଇନ୍ଧନେ,
ବର୍ଷିଲେ କୁସୁମ ରାଶି
ହରିବୋଲ ହୁଳହୁଳି ସ୍ୱନେ ।

ଚିତା ଅଗ୍ନି ଲଗାଇଲେ
ହରିବୋଲ ହୁଳୁହୁଳି ନାଦେ
କୁସୁମ ବରଷା କଲେ
ହୃଦୟର ଅତୁଳ ଆହ୍ଲାଦେ ।

କେତେ ଘଣ୍ଟା ମଧ୍ୟେ ଚତା
ଜାଳି ଦେଲ, ଦଂପତିର ତନୁ
ଦୁହିଁଙ୍କର ଭସ୍ମ ମିଶି
ଏକ ହେଲ ଅସ୍ଥି ରୂଳେ ଅସ୍ଥି ।

ସକଳେ ଫେରିଲେ ଗ୍ରାମେ ।
ଗାଇ କୀର୍ତ୍ତି-ଗାଥା ଗାଇ ଗାଇ
ପଥ-ପରିକ୍ରମା କାଲି,
ସଜା ଆଜ ମଙ୍ଗଳର ସାଜ ।



# ରତନ ସିଂହ

ରତନ ସିଂହ ନୃପତି ସମ୍ମୁଖେ
କିଏ ସେ କରଇ ନିବେଦନ ?
କଣ୍ଠ ତାହାର କଂପ୍ର କାତର,
କଣ୍ଠର ଭାଷା ସବେଦନ—
"ଅଭୟ ମିଳିଲେ ଦୁଃଖ କହିବି,
ଧର୍ମର ଆହେ ଅବତାର ।"

"ଅଭୟ ଦେଉଛୁ, କହ ଯାଅ ଏବେ
ଯା ଅଛି ତୁମର କହିବାର ।"

"କହିବାର ତାହା ସହଜ ନୁହଇ
ଭୁଞ୍ଜୁଛି ଯେଉଁ ଅନୁଯୋଗ,
ମନ୍ତ୍ରୀମାଙ୍କର କୁମାର-ବିରୋଧେ
ଆଣିଅଛି ମୋର ଅଭିଯୋଗ ।

ସୁଲୋଚନା ମୋର ପ୍ରାଣର ଦୁହିତା—"
କହୁ ପାରିଲାନି ତାର କଥା,
ଉଦ୍‌ଗତ ତାର ଅଶ୍ରୁ ଆବେଗେ
ଢାଳିଲା ପ୍ରାଣର କାତରତା ।

"ବୁଝୁଅଛୁ ତୁମ କାତରତା କଥା,
କଥା କହୁଥାଅ ଥୟ ଧରି ।"

"ଥୟ ଧରିବାର ଶକତି ନାହିଁ ମୋ"
ତଥାପି କହୁଛି ଥରି ଥରି ।

"ସୁଲୋଚନା ମୋର କାଲି ସନ୍ଧ୍ୟାରେ
ଆମ ଗାଁଆ-ପାଖ ନଈ କୂଳେ
ସ୍ନାହାନ କରିବା ପାଇଁ ଯାଇଥିଲା
ଆମ ଗାଆଁ ଝିଅ ବୋହୂଗୁଲେ ।
ମୋ ସୁନା ଝିଅର ରୂପ ସୁନ୍ଦର,
କରମକୁ ତାହା ହେଲା ବାମ,
ରୂପରେ ଏମିତି ଦୁର୍ଗତି ଥାଏ
ଜାଣି ନଥିଲା ତା ପରିଣାମ ।"

"ପରିଣାମ ତେବେ କଅଣ ହେଲାଟି,
କହୁ ଦିଅ ଏବେ ସତ୍ୱର,
ଏତିକି ଶୁଣି ତ ଉଦ୍‌ବେଗବଶେ
ଚଞ୍ଚଳ ମୋର ଅନ୍ତର ।"

"ମଣିମାଙ୍କର ଯୁବରାଜ ଚଢ଼ି
ଦଳବଳ ଘେନ ମିଳି ଯାଇ
ବଳ-ପ୍ରୟୋଗରେ ମୋହର ଝିଅକୁ
ବୋହି ନେଇଗଲେ ସେଠୁ କାଢ଼ି ।

ତା ସାଥି ମେଳରୁ
ଶୁଣିଲି ବେଳରୁ
କସ ଯେ ମୋହର ଦୁରୁଦଶା

କେଉଁପରି ମୁହିଁ
ବଞ୍ଚି ରହିଚ,
କପରି ହେଉଚ ଲୋକହସା !

ମଣିମାଙ୍କର ଗଉଁଡଥିଆ ମୁହିଁ
ସମାଜରେ ଅଛି ମାନଥାନ,
ଧର୍ମାବତାର ବୁଦ୍ଧି ପାରୁଥିବେ
ମୋର ଲାଞ୍ଛନା, ଅପମାନ ?

ରକ୍ଷକ ହୋଇ ଭକ୍ଷକ ହେଲେ
ରାଇଜ ହେବ କେଉଁପରି ?
ପ୍ରଥ ପ୍ରଜାଜନ କାଳ କଟାଇବେ
ଜୀବନରେ କେଉଁ ଆଶା ଧରି ?

ମୋହର ଭାଗ୍ୟ ଏକା ନୁହେ ପ୍ରଭୁ,
ବହୁ ହତଭାଗା ଏ ଦେଶରେ,
କୁମାରଙ୍କର ଦୁଷ୍କୃତି ହେତୁ
ହତମାନ ଏବେ ବିଶେଷରେ ।"

କିଛି କ୍ଷଣ ତହିଁ ମଉନରେ ରହି
ବଚନ ବୋଇଲେ ନରରାଜ,
"ହୃଦୟଙ୍ଗମ କରି ପାରୁଅଛ,
କହିଗଲି ତୁମେ ଯାହା ଆଜ ।

ତୁମର ଗ୍ରାମକୁ
ଫେରିଯାଅ ତୁମେ,
ମୁଁ ଭି ଯିବି ଆଜ ରାଜ୍ୟରେ,
ବୁଝି ପାରିବି ମୁଁ
ସକଳ ଘଟନା
ପହଞ୍ଚିଲେ ସେଇ କ୍ଷେତ୍ରରେ ।"

ରାମ ଚୈଁତଥା ଆସିଥିଲା ତହିଁ
ସଙ୍ଗରେ ଘେନ ସହଚର,
ସଙ୍ଗରେ ସେଇ ସହଚର ଘେନ
ଗ୍ରାମକୁ ଫେରିଲା ସତ୍ୱର ।

ଅନ୍ଧାର କାଟି ଚନ୍ଦ୍ର ଉଇଁଲେ
ନୀଳ ଗଗନର ବକ୍ଷେ,
ଗୋଟି ଗୋଟି ଫୁଟି ତାରକା ଚାହିଁଲେ
ପଲକବିହୀନ ଚକ୍ଷେ ।

ଗହଣରେ ଘେନ ସୈନିକ ଦଳ
ନୃପତି ଚଳିଲେ ଗ୍ରାମପଥେ,
ତାଙ୍କ ଛାମୁରେ ଗ୍ରାମର ଜନତା
ଜଣାଇଲେ ପୁଣି କେତେମତେ ।

ଜଣକୁ ଜଣକୁ ପଚ୍ଛୁର ଉତ୍ତର
        ସନ୍ଧାନ ନେଲେ ସତ୍ୱରେ,
ଘଟଣାର ଘଣ୍ଟା ବୁଝିନେଲେ ତହିଁ
        ବ୍ୟଥିତ କାତର ଅନ୍ତରେ ।

ଶେଷରେ କହିଲେ—"ଚାଲ, ଗହଁ ଉଆ
        ଝଣ୍ଟା ଆଡକୁ ଚିଭେ ଚାଲ,
ତୁମର ଜିଅର ପାଖରୁ ଜାଣିବ,
        ବିଶେଷ ତାହାର ସମାଚାର ।"

ଝଣ୍ଟାକୁ ଯାଇ
କଅଣ ଦେଖିଲେ;
        କଅଣ ଦେଖିଲେ ନରବର ?
ବିଷଖାଇ ବାଳା
ମୃତ୍ୟୁ-ଜାଲାରେ
        ହେଉଅଛୁ ଖାଲି ଛଲବଲ ।

ଅପରାଧୀ ନିଜ ପୁତ୍ର-ବିରୋଧେ
        ନରପତି ହେଲେ ଚଣ୍ଡ,
ଅପରାଧୀ ନିଜ ପୁତ୍ର-ବିରୋଧେ
        ଶୁଣାଇଲେ ପ୍ରାଣଦଣ୍ଡ ।

ଗ୍ରାମରୁ ଅଚିରେ ବିଦାୟ ଘେନି ସେ
        ଦଳବଳ ଘେନି ସଙ୍ଗରେ
କଅଣ ତହିଁ ଯେ କରିବାକୁ ହେବ,
        ଫେରିଲେ ଆପଣା ନଗ୍ରରେ ।

ପର ପ୍ରଭାତରେ ଡାକିଲା ବେଳକୁ
କୁମାରଙ୍କର ପତା ନାହିଁ,
ରାଜ-ଅବରୋଧ ଭେଜି ଭରବରେ
ପଳାଇ ଗଲେଣି କେଉଁଠାଇଁ ।

କେତେ ଠାଇଁ ରାଜା ସନ୍ଧାନ ନେଲେ,
ସନ୍ଧାନ ନେଲେ କେତେ ଠାଇଁ,
"ପଦ୍ମପୁରରେ ପଟ୍ଟାସ୍ୱତ ପୁରେ
ଲୁଚିଛନ୍ତି ସେ ଭୟପାଇ ।"

ମଣିମାଙ୍କର
ପଞ୍ଜିକା ଗଳ୍ପ
ପଟ୍ଟାସ୍ୱତ ପାଶେ ସତ୍ୱର—

"ଯୁବରାଜ ସଙ୍ଗ
ତୁମେ ଜଳେ ଆସି,
ଦେଖା କର ମୋତେ, ଦେଖା କର ।"

ଯୁବରାଜ କାହିଁ ଆସିଲେ ନାହିଁ ତ
ଆସିଲେ କେବଳ ପଟ୍ଟାସ୍ୱତ,
ତାଙ୍କ ସାଥିରେ ଉପଗତ ଆସି
ଦେଶର ପରଜା ଶତ ଶତ ।

"ଦଣ୍ଡ ଦେବାରେ ଶକ୍ତି ଯାହାର,
ରହିଛି ଯାହାର ଅଧିକାର
ଅପରାଧର ସେ କ୍ଷମା ଦେବାପାଇଁ
ଜଗତରେ ଏକା ବଳୀଆର ।

ଆମ ଏ ଦେଶର କୁମାରଙ୍କର
କ୍ଷମା କରି ଦେବ, ଅପରାଧ,
ଉତ୍ସାହବଶ ଏଇ ଅପରାଧ, ପ୍ରଭୁ,
ସ୍ୱାଭାବିକ ଏଇ ପରମାଦ ।"

"କ୍ଷମା ମାଗି ଦେଲେ
କ୍ଷମା ମିଳେ ନାହିଁ
ଯୋଗ୍ୟତା ଥିଲେ କ୍ଷମା ମିଳେ,
ପ୍ରାଣ ଦଣ୍ଡ ଯେ
ଦେଇ ଅଛି ମୁହିଁ,
ବିଚ୍ୟୁତ ହେବ ନାହିଁ ତିଳେ ।"

ମନ୍ତ୍ରୀମାନଙ୍କର ଦରବାରେ ମିଳି,
ଦେଶର ଜନତା, ରାଜଜନ,
କୁମାରଙ୍କର ମୁକ୍ତି ପାଇଁ କ
କରିଲେ କାତର ନିବେଦନ ।

ପଶ୍ଚାତ୍ତାପ କେତେ ଅନୁନୟ କଲେ—
"କିଛି ନାହିଁ ମୋର କହିବାର,
ଅନ୍ତରରେ ମୋ ଦୟା କର ପିତା,
ତୁମେ ତ ଦୟାର ଅବତାର ।"

ପ୍ରାଣେ ମହର୍ଷି କଷ୍ଟ କରିଲେ,
କ୍ଷମା ଦେବା ପାଇଁ, କ୍ଷମା ପାଇଁ,
"ପ୍ରତ୍ୟାହାର ମୁଁ କଲି ମୋ ଦଣ୍ଡ ।"
ଶୁଣାଇଲେ ଶେଷେ ନରସାଇଁ ।

ରାଇଜର ରାଜା ମନରେ ଭାଳିଲେ
ନିଶ୍ଚିତ ଏକ ବଜ୍ରପାତ
ଚିନ୍ତାର ତାପେ ବେଦନାର ସ୍ତୂପେ
ପୀଡ଼ିତ ହୋଇଲେ ଅତ୍ୟନ୍ତ ।

ସପ୍ତ ବାସରେ ଅଶେଷ ତ୍ରାସରେ
ରତନ ସିଂହ ହେଲେ ଶେଷ,
ତାହାର ସାଥିରେ ଗଲା ତାଙ୍କର
ସ୍ୱପ୍ନର ଧର୍ମ-ନିର୍ଦ୍ଦେଶ ।



"ଅଦ୍ୱିଜର ହୋଇପାରେ
ଦ୍ୱିଜ ପରାକ୍ରମ"

ଷଡ଼୍ୱିଂଶ-ବିଲମ୍ବିତ ଚଇ ସ୍ୱପ୍ନ ଆଉ ଚଳେ
ରଜନୀର ବିଲମ୍ବିତ ଯାମେ
ଭୁଲିଥିବୁଲଭ ଏକ ନାଟଥାଣ-ସ୍ୱପ୍ନ
ବସିଥିଲି ବରପାଲି ଗ୍ରାମେ ।

ଭେଡ଼ା ଝୋଲି,
ସୋନପୁର,
କଳାହାଣ୍ଡି,
ବଲାଙ୍ଗୀର,
ସମ୍ବଲପୁର,
ଗାଙ୍ଗପୁର
ବହୁ ଅଞ୍ଚଳରୁ ଆସି ନାଟ ସଭ
ହୋଇଥିଲେ ଠୁଳ ।

ସଭାପତି ଆସନରେ ସମାସୀନ
କବି ଗଙ୍ଗାଧର,
ଜାତିର କଲ୍ୟାଣ ଅର୍ଥେ
ଆଲୋଚନା କରିବାରେ
ଥିଲେ ତହିଁ କେତେକ ତତ୍ପର ।

ଗୋବିନ୍ଦ ମେହେରର ଉଠି ସବିନୟ ଗିରେ
ନିବେଦିଲେ,
ଆପଣାର ହୃଦୟର ଭାବ,
"ଆଜ୍ଞା ଏବେ ବାଢ଼ୁଅଛି ମୋହର ପ୍ରସ୍ତାବ,
ସମାଜରେ ଯେଉଁ ଜାତି ଆପଣାକୁ
ବଡ ମନେ କରେ
କହୁଅଛି ମୁହିଁ ସେହି ଦ୍ୱିଜ ଜାତି-କଥା,
ତାଙ୍କ ସାଙ୍ଗେ ମିଶି ସମବସ୍ୱଦର, ବାରୁ,
କରଣ, କୁଲଟା,
ଯେତେକ ଜାତି ସ୍ପୃହାବଶେ, ଅଧର୍ମିକାଭରେ
ଜଳ ସ୍ପର୍ଶ କରନ୍ତିନ ଆମ ଘରେ,
ଆମ ଏ କୁଳରେ ।

ଜାତି ଭାଇମାନେ ମୋର, ସେହି ସେହି
ଜାତିଙ୍କର ଗୃହେ
ଜାଣି ଶୁଣି ଆମର ତ ଜଳସ୍ପର୍ଶ
କରିବାର ନୁହେଁ

ସେଇ ସେଇ ଜାତିଙ୍କର ଗୃହେ ଆମେ
ଅଜଠାରୁ,
ଜଳସ୍ପର୍ଶ କରିବା ନା ଆଉ ।"

ଶୁଣି ଶୁଣି ଫୁହୁଁ ଫୁହୁଁ,
ବୃଷଭ ମେଦ୍ୱେର
ଝଡ଼,-କ୍ଷୁବ୍ଧ ଢେଉ ଭଳି ହୋଇଲେ ଉଦ୍‌ବେଳ—

ବୋଇଲେ—"ଗୋବିନ୍ଦ ସାଇ କହୁଛନ୍ତି
ସାର କଥାଟାଏ
ଆଲୋଚନା ପାଇଁ ଏବେ ଆଜି ହେଉ,
ସଙ୍ଗପଠ ଆଗେ ।"

ଜନାର୍ଦ୍ଦନ ଗର୍ବିତଥା ଜଣାଇଲେ—
"ନିଶ୍ଚୟ ଏ ଚମତ୍କାର କଥା,
ଏ ସମ୍ପର୍କରେ ହେଉ ତେବେ ତାର ଏକ
ବିହିତ ବ୍ୟବସ୍ଥା ।
ଗଣ୍ଡ ଜାତି ହାତରୁ ତ ଜଳସ୍ପର୍ଶ
କରନ୍ତି ନା କେହି,
ଗଣ୍ଡ ଭାଇମାନେ ତେଣୁ କାହା ଘରେ
ଜଳସ୍ପର୍ଶ କରନ୍ତି ନା
ସେଇ ଭାବ ନେଇ ।"

ଟିକଏ ଚଞ୍ଚଳ ନୋହି ସସ୍ମିତ
ଧୀରେ, ଅତି ଧୀରେ,
'କଅଣ କହୁଚ ଭାଇ ?'' ଆପଣାର
ପ୍ରଶ୍ନ ପଚାରିଲେ—

''ଆମେ ତ ଭୁଲୁଆ ଜାତି ଉଦ୍ବାସ୍ତୁ ଜାତି
ଆମେ କିଁପା ଗଣ୍ୟ ହେବା ?
ଉର୍ଦ୍ଧ୍ୱରେ କି ପ୍ରାପ୍ତି
ଜୀବନରେ ମିଳିବ ଆମକୁ ?
ବୃଥାଷ୍ଟାରେ କିଁପା ଶ୍ରେଷ୍ଠ କରିବା ଟି
ଆମର ନାମକୁ ?

ସେବାଧର୍ମେ, ଉଚ୍ଚତର ସେବାଧର୍ମେ
ଆମର ତ ରହିଅଛି ନାମ
ଯିଏ ଯେଉଁ ବ୍ୟବହାର କଲେ ମଧ୍ୟ
ଆମେ ସିଦ୍ଧକାମ ।

ମଣିଷ ଜାତି ତ ଆଗେ ନଗ୍ନ ଥିଲା,
ଆମେ ତ ଭୁଲୁଆ ଜାତି,
ଉଦ୍ବାସ୍ତୁ ଜାତି,
ଲଜ୍ଜା ଆବରଣ ଦେଇ, ବସ୍ତ୍ର ଦେଇ
ମଣିଷ ଜାତିରେ
ସଭ୍ୟ କରି
ଭଦ୍ର କରି
ଜଗତରେ ଦେଇଛେଁ ସମ୍ଭ୍ରାନ୍ତ ।

ସେ ସବୁ ଜାଣିଲେ ନାହିଁ ଆମ ଅବଦାନ,
ସେ ସବୁ ବୁଝିଲେ ନାହିଁ ଆମର କ ଦାନ,
ବରଞ୍ଚ ଓଲଟା ବୁଝି
ବସ୍ତ୍ର-ସ୍ୱାନତା ସୃଜ,
ଅନ୍ତ ଅଭିମାନେ
କବା ସ୍ତବ
କହୁଛନ୍ତି
ଶ୍ରେଷ୍ଠ ଜାତି ଆମେ ।

ଏତକରେ, ଏତକରେ ତୃପ୍ତ ନୋହୁ ପୁଣି,
କୃଷ୍ଣଙ୍କ ପନ୍ଥଁରୁ ବୋଲି ଗାଲି ଗଲ୍ପ ଗୁଣି
ଅଜ୍ଞାନ ଅବୋଧ ବୋଲି
କହୁଛନ୍ତି ବହୁତ ପ୍ରକାର,
ଶେଷ ନାହିଁ, ଅନ୍ତ ନାହିଁ ଯାର ।

ସେମାନଙ୍କ ଭଳି ଆମେ ତାଙ୍କ ଘରୁ
ଜଳକୂର୍ଣ୍ଣ ବନ୍ଦ କରି ସବୁ,
ଶ୍ରେଷ୍ଠ ହେବା ହୃଦୟରେ, ଶ୍ରେଷ୍ଠ ହେବା
ଆମେ କାହିଁ ପାଇଁ ?"

ରାମକୃଷ୍ଣ ପ୍ରସ୍ତାବିଲେ—"ଆମେ ଏବେ
କରିବା ଶପଥ,
ସେମାନଙ୍କ ବ୍ୟବହାର ଭଲ କରି
ବିସ୍ମରିବା,
ଦେଖି ନେବା ଆମର ଯା ପଥ ।"

ସ୍ୱପକ୍ଷ ବିପକ୍ଷର ସ୍ଥିର ରହି
ଜଣାଇଲେ ନିଜ ଅଭିମତ,—
"'ଶିବ ଚନ୍ଦ୍ର ବନ୍ଧୁର କି—ତା' ଆମର
ପଥ ନା ଅପଥ ?

ପଥର ପଥିକ ହୋଇ ଆଜି ଏଇ
ସମାଜ ଭିତରେ
ବୁଦ୍ଧି ଧର, ବୁଝ ଭଲ ଆଗେଇବା
ନିଶ୍ଚିତ ଚଳରେ ।
"ଅଦ୍ୱିଜର ହୋଇପାରେ ଦ୍ୱିଜ-ପରାକ୍ରମ
ଜଗତରେ ବୁଝ ନୁହେଁ ପ୍ରକୃତିର ଧର୍ମ",

ଗୋଟିଏ ମୁହୂର୍ତ୍ତି ପାଇଁ ରାମକୃଷ୍ଣ
ବସ୍ତୁରଲେ ଥରେ ;
ବୃଦ୍ଧସ୍ୱର ଉଦାରତା ଉଚ୍ଚାରଲେ
ବେଶ୍ ଉଚ୍ଚ ସ୍ୱରେ—

"ତନ୍ତ୍ର ଧର ଆମେମାନେ
ବସ୍ତ୍ରରାଜି
କରୁଚ୍ ବୟନ,
ଯନ୍ତ୍ର ତୁମେ ଆମ ପାଇଁ,
ଦେଶ ପାଇଁ
କରୁଚ ସୃଜନ ।

ଦ୍ୱିଜଠାରୁ ବଳି ତୁମେ ମସ୍ତିଷ୍କବାନ୍
ତୁମେ ଶସ୍ତ୍ରଧର,
ହାୟ ଏଇ ସାଇଜରେ ହୋଇଅଛ
ଜଡ଼, ଜଡ଼ବତ ।

ବରଣୀୟ ତବ ବାଣୀ, ବର୍ତ୍ତମାନ
ପ୍ରତିଜ୍ଞା କର,
ଶ୍ରେଷ୍ଠ ହେବା ନାହିଁ ଆମେ, ଶ୍ରେଷ୍ଠ ହେବା ନାହିଁ
ସେମାନଙ୍କ ପନ୍ଥା ଅନୁସର ।”



# ଟିପ୍ପଣୀ

## ଜରାଓର ସିଂହ ଦେଓ

ସମ୍ବଲପୁରର ମହାରାଜା ଅଜିତ ସିଂହଙ୍କ ରାଜତ୍ୱ କାଳରେ ଡେଢ଼ାଖୋଲ-ରାଜା ଭଗୀରଥ କେନାମଣି ବିଦ୍ରୋହ କରିଥିଲେ । ତାହାଙ୍କୁ ଦମନ କରିବାର ଦାୟିତ୍ୱ ସୋନପୁର ରାଜା ଦିବ୍ୟସିଂହ ଦେଓ ନେଇଥିଲେ । ସେ ତାଙ୍କ ଯୁବରାଜ ଜରାଓର ଦେଓଙ୍କୁ କେନାମଣିଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପଠାଇଥିଲେ । ଜରାଓର ଦେଓ ଡେଢ଼ାଖୋଲ ରାଜାଙ୍କୁ ପରାସ୍ତ କରି, ତାଙ୍କୁ ବନ୍ଦୀ କରି ସମ୍ବଲପୁରର ମହାରାଜାଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ । ଅଜିତ ସିଂହ ଡେଢ଼ାଖୋଲ ରାଜାଙ୍କ ଠାରୁ ଷାଠିଏ ଖଣ୍ଡ ଗ୍ରାମ ସୋନପୁରକୁ ପୁରସ୍କାର ଦେଇଥିଲେ ଓ କେନାମଣି ଜରାଓରଙ୍କୁ କନ୍ୟା ଦାନ କରି ସୁସମ୍ପର୍କ ସ୍ଥାପନ କରିଥିଲେ ।

ସମ୍ବଲପୁର ଡିଷ୍ଟ୍ରିକ୍ଟ ଗେଜେଟିଅର୍ ପୃ ୫୯-୬୦ରେ ତାହା ଉଲ୍ଲିଖିତ ହୋଇଅଛି ।

## ତୁଳସୀ ଗୋ !

## ଦୀନଦୁଃଖୀ ତୁମେ କେଉଟୁଣୀ

ବରପାଲିରେ ପ୍ରଭୁ ରାମଚନ୍ଦ୍ରଙ୍କର ଗୋଟିଏ ମନ୍ଦିର ଅଛି । ସେଇ ସ୍ଥାନର "ତୁଳସୀ କେଉଟୁଣୀ" ତାହା ନିର୍ମାଣ କରାଇଥିଲେ । କବି ଗଙ୍ଗାଧର ମେହେର ତାଙ୍କର "ନୃପରାଜ ସିଂହ ୪ର୍ଥ ପରିଚ୍ଛେଦ"ରେ ତୁଳସୀ କେଉଟୁଣୀ ଦ୍ୱାରା ନିର୍ମିତ ଦେଉଳଟିରେ କେତେଟଙ୍କା ଖର୍ଚ୍ଚ ହୋଇଥିଲା ତାହା ଉଲ୍ଲେଖ କରିଛନ୍ତି ।

ଗଙ୍ଗାଧର ଗ୍ରନ୍ଥାବଳୀ

ପୃ ୪୨୨ ସ୍ଥା

## ମୋ ଜୀବନ ପଛେ
## ନର୍କ କୁଣ୍ଡେ ପଡୁ

ସୋନପୁର ରାଜା ନୀଳାଦ୍ରି ନାଥ ସିଂହ ଦେଓ ଅର୍ଥାତ୍ ଶ୍ରୀ ନୀଳଧର ସିଂହ ଦେଓ ଓ ଅଲେଖ ଭକ୍ତ ଭୀମ ଭୋଇଙ୍କ ଜୀବନର ଏକ ସ୍ମରଣୀୟ ଘଟନା ।

## ପୀତବାସ ଷଡ଼ଙ୍ଗୀ

କଳ୍ବତାର ବିଶିଷ୍ଟ ବନ୍ଧୁ ଐତିହାସିକ ଶ୍ରୀ ଶିବ ପ୍ରସାଦ ଦାଶଙ୍କ "ସମ୍ବଲପୁର ଇତିହାସ"ରୁ ଗୃହୀତ ।

"ପୀତବାସ ଷଡ଼ଙ୍ଗୀ ଅଭୟ ସିଂହଙ୍କ ଠାରୁ ସର୍ଦ୍ଦୋଲଗ୍ରାମ ଦାନ ପାଇଥିଲେ ଏବଂ ସମ୍ବଲପୁରର ହେଁତାପଡାର ଜଗନ୍ନାଥଙ୍କୁ ତାହା ଚଢ଼ାଇ ଦେଇଥିଲେ ।"

## ସତୀ ଆଜି ମଙ୍ଗୁଳୁର ରାଣି

ସୁନ୍ଦର ଗଡ ଜିଲ୍ଲାର ଜଣେ ବ୍ରାହ୍ମଣ କୌଣସି କାରଣରୁ ତାର ବିବାହିତ ସ୍ତ୍ରୀକୁ ଘରୁ ଅନ୍ତର କରି ଦେଇଥିଲା । ସେଇ ସ୍ତ୍ରୀ ଯାଇ ତାର ପିତୃ-ଗୃହରେ ଆଶ୍ରୟ ନେଇଥିଲା । ପିତାମାତାଙ୍କର ମୃତ୍ୟୁ ହେବାରୁ ନିରାଶ୍ରୟା ଭିକ୍ଷା ବୃତ୍ତି କରି ବଞ୍ଚି ରହିଥିଲା । ବ୍ରାହ୍ମଣ ଦ୍ୱିତୀୟ ଦାର ପରିଗ୍ରହ କରି କେତୋଟି ସନ୍ତାନ ସନ୍ତତିର ପିତା ହେଲେ । ସେଇ ସ୍ତ୍ରୀ ବିଚ୍ଛେଦର ୨୫ ବର୍ଷ ପରେ ତାର ମୃତ୍ୟୁ ହେଲା । ସେଇ ସମ୍ବାଦ ପାଇ ତାର ପ୍ରଥମ ସ୍ତ୍ରୀ ଶ୍ମଶାନ କ୍ଷେତ୍ରରେ ପହଞ୍ଚି ଯାଇ ପତିର ଚିତାଗ୍ନିରେ ସତୀ ଯାଇଥିଲା ।

ସୁନ୍ଦରଗଡ ଡିଷ୍ଟ୍ରିକ୍ଟ ଗେଜେଟିଅରର ପୃ ୮୫ରେ ସେଇ ଘଟନାର ଉଲ୍ଲେଖ ଅଛି ।

## ଭାଇ ଭାଇ

ଶ୍ରୀ ରାମଚନ୍ଦ୍ର ମଲ୍ଲିକଙ୍କର ସଂକ୍ଷିପ୍ତ କୋଶଳ ଇତିହାସର ପୃ ୧୧୪ଷ୍ଠାରେ ଶ୍ରୀ ନରସିଂହ ଦେବ ଓ ଶ୍ରୀ ବଳରାମ ଦେବଙ୍କ ସମ୍ପର୍କରେ ଯେଉଁ ଘଟଣା ଲିଖିତ ଅଛି ତାହାର ମୁଁ କବିତା ରୂପ ଦେଇଛି । ସେଇ ଘଟଣାରେ ସମ୍ବଲପୁର ରାଜ୍ୟର ନୂତନ ସୃଷ୍ଟି ଓ ଶ୍ରୀ ବଳରାମ ଦେବ ତାର ପ୍ରଥମ ରାଜା ।

## ରତନ ସିଂହ

ଶ୍ରୀ ଶିବପ୍ରସାଦ ଦାଶ ତାଙ୍କର ସମ୍ବଲପୁର ଇତିହାସରେ ଲେଖି ଯାଇଛନ୍ତି ଯେ "କମ୍ବଦନ୍ତୀ ଅଛି ଯେ ଯୁବକ ଛତ୍ର ସାଏ ସୁଲୋଚନା ନାମ୍ନୀ ଏକ ରୂପବତୀ ଯୁବତୀର ପ୍ରେମରେ ପଡ଼ିବାରୁ ଯୁବତୀର ଆତ୍ମୀୟମାନେ ରତ୍ନ ସିଂହଙ୍କ ଠାରେ ପ୍ରାର୍ଥୀ ହେଲେ । ରତ୍ନ ସିଂହ ନ୍ୟାୟ ବିଚାରରେ ପୁଅକୁ ପ୍ରାଣଦଣ୍ଡାଦେଶ ଦେଲେ । ଛତ୍ର ସାଏ ପଦ୍ମପୁର ଦୁର୍ଗକୁ ପଳାଇ ଯାଇ ପ୍ରାଣରକ୍ଷା କଲେ । ପଛକୁ ପ୍ରଜାଙ୍କ ଅନୁନୟରେ ରାଜା ଆଦେଶ ପ୍ରତ୍ୟାହାର କରିବାରୁ ଛତ୍ର ସାଏ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।"

ସମ୍ବଲପୁର ଇତିହାସ
ପୃ ୧୭୪ଷ୍ଠା

ରତ୍ନ ସିଂହ ସମ୍ବଲପୁରରେ କେବଳ ଚାରିମାସ ରାଜତ୍ୱ କରି ଅକାଳରେ ମୃତ୍ୟୁ ବରଣ କରିଥିଲେ ।

# 'ଅଦ୍ୱିଜର ହୋଇପାରେ ଦ୍ୱିଜ ପରାକ୍ରମ'

"ଅଦ୍ୱିଜର ହୋଇପାରେ ଦ୍ୱିଜ ପରାକ୍ରମ
ଜଗତରେ ତୁଚ୍ଛ ନୁହେଁ ପ୍ରକୃତିର ଧର୍ମ ।" ପଂକ୍ତି ଦୁଇଟି କବି ଗଙ୍ଗାଧର ମେହେରଙ୍କ "ଚନ୍ଦ୍ରଭାଗା" କବିତାର ତ୍ରୟୋଦଶ ପଦରୁ ଉଦ୍ଧୃତ କରାଯାଇଛି ।

—✽—